# କବିତାବଳୀ

# ସୂଚୀ

# କବିତାବଳୀ

## ପାର୍ବତୀବିବାହ

### (କଳସା ଚଉତିଶା—ବଚ୍ଛା ଦାସ)

କହନ୍ତି କାମିନୀ ଶୁଣ ହେମନ୍ତଦୁଲଣି
କାହିଁ ବରେ ବରିଲେ ତୁମ୍ଭର ପିତାମଣି ।
କୁଳ ମୂଳ ଗୋତ୍ର ଆଦ ନାହିଁ ଜଣା ତାର
କନକଦେହୀରେ ବୁଢ଼ା ବରିଛି ମଧୁର ।
ଖୁଂ ଖୁଂ ଖାସ ସାହାବିସେଣ ପେଲୁଅଛି ଧଇଂ
ଖର ନିଶ୍ୱାସ ବୁଢ଼ାର ମାଥ ଲୁଟେ ଭୂଇଂ ।
ଖଣ୍ଡିଆ ଯୋଗୀର ସଙ୍ଗେ ନାହିଁ ଯାନ ତାର
ଖଣ୍ଡିଆ ବଳଦ ବୁଢ଼ା ବାନ୍ଧିଛି ପାଖର ।
ଗୋଡ଼ ହାତ ଗଣ୍ଠି ଫୁଲି, ଗଡୁଛି ନୟନ
ଗଣ୍ଡସ୍ଥଳେ ଲମ୍ବଇ ମୁହୁଁରି ଦରଶନ ।
ଗ୍ୟାନଭ୍ରଷ୍ଟ ହୋଇଲାନି ଭେବଳ ତା ମତି
ଗୁଣ ଲକ୍ଷଣ ବୁଢ଼ାର ନାହିଁ ତହିଁ ଗତି ।
ଘର ତାର କେବଣ ଦେଶରେ ତଥ୍ୟ ନାହିଁ
ଘଠାଇଲା ବିହି ଆଣି ଏମନ୍ତ ଜଗାଇ ।
ଘଠ ଘଠ ହୋଇ ନାଳ ବହଇ ତୁଣ୍ଡର
ଘନ ଜଠା ଲେମ୍ବୁଏକ ବାନ୍ଧିଛି ମୁଣ୍ଡର ।
ନ ଶୁଝଇ ମନୁଷ୍ୟ ସେ ନ ଦେଖେ ନୟନ
ନିକଟେ ଡାକିଲେ ନ ଶୁଣେ ତା ବେନି କର୍ଣ୍ଣ ।

ନଖ ମୁଖ ଚକ୍ଷୁସ୍ଥାନ ପଶିଲା ଭିତର
ନୂଆ ଖଣି-ଖଣା ପ୍ରାଏ ଦିଶୁଛି ଉଦର ।
ଚର୍ମେକ ମାଡ଼ଣ ବୁଢ଼ା ବସିଲା ମଧ୍ୟେଣ
ଚଉପାଶେ ବେଢ଼ିଛନ୍ତି ଦେବତା ବ୍ରାହ୍ମଣ ।
ଚକୋର ବୁଢ଼ାକୁ ଦେଖି ଚକିତ ହୋଇଲେ
ଚିନ୍ତାସାଗରେଣେ ସଖି ! କଷ୍ଟେ ବୁଡ଼ିଲେ ।
ଛନ୍ନଅଙ୍ଗେ ଛିଣ୍ଡା କନ୍ଥା ଲଗିଛି ତାହାର
ଛାର ପାଉଁଶ ଲେଗୁଏ ଲେପିଛି ଶରୀର ।
ଛନ୍ଦିଅଛି ସର୍ପମାଳ ମୁଣ୍ଡେ ଆଭରଣ
ଛଟକେ ଭେଳକ ବୁଢ଼ା ଲଗାଇଲା ଜାଣ ।
ଜଙ୍ଗମକୁ ପ୍ରାପତ ହୋଇଲେ ଚନ୍ଦ୍ରମୁଖି
ଯାହା ତୋର କପାଳରେ ବନ୍ଧ ଅଛି ଲେଖି ।
ଯୁବାକାଳେ ଯଉଁ ଯୋଗ ଭୁଞ୍ଜିବୁ ନା ଯାହା
ଜାଣୁ ଜାଣୁ ଜଙ୍ଗମ ଗୋଠାକୁ ହେଲୁ ବାହା ।
ଝୁମ୍ବୁ ଝୁମ୍ବୁ ବାଜେ ଘଣ୍ଟି ଘାଗୁଡ଼ି ଲେଗୁଏ
ଝମଲୁଣ ଅଛି କରେ ତ୍ରିଶୂଳ ଗୋଟାଏ ।
ଝୁଲି ହୋଇ ଝୁଙ୍କି ହୋଇ ପଡ଼ୁଛି ଢୁଳାଇ
ଝିଅ କି ନାତୁଣୀ ପ୍ରାଏ ଦିଶିବୁ ଗୋ ତୁହି ।
ଞସଢେଣ କହେ କଥା ଞକୂଟିଣ ଦାନ୍ତ
ନ ଆସଇ ବାଣୀ ତାର ହୁହୁଁ ହୋଏ ଅନ୍ତ ।
ଞଣ ଦାନ୍ତ ଚୁଟ ତାକୁ ନ ମିଳେ ଭଣ୍ଡାର
ଞଶାକାଳେ ଯେ ଦେଖିଲେ ଭୟେ ଡର ପାଇ ।
ଟଳ-ଟଳ ହୋଇ ଟେକି ବସି ନ ପାରଇ
ଟାକୁଆ ଗାଲ ପାକୁଆ ଦାନ୍ତ ଆଦ ନାହିଁ ।
ଟକ ଟକ ହୋଇ ତା ଲାଗଇ ବେକ କଣ୍ଠ
ଟାକରା ନମୀଖି ସେ ଅଛିତ ଅପାବନ ।

ଟୁଲ କରିଥିବା ଭିକ୍ଷା ମାଗିବାର ଧନ
ଟଙ୍କା ଥିଲି ଦେବ ବୋଲି ହେମନ୍ତ ସଜନ,
ଠକର ସ୍ୱଭାବ ସେ ଗୋ ଲଗାଇଲା ଆଣି
ଠାବେ ହେତୁ ନାଶ ଗଲା ହେମନ୍ତ-ଦୁଲଣୀ ।
ଡାକଏ ବଜାଉଅଛି ଥାଳେକ ଝୋଲିର
ଡଙ୍ଗର ଡାଙ୍ଗୁଆ ସେନି କରିବୁ ଗୋ ଘର ।
ଡମ୍ବରୁଧରଙ୍କୁ ସେବା କଲି ପରମାଣି
ଡଙ୍ଗର ଦର ପଇଲି ଦେଲେ ଶୂଳପାଣି ।
ଢୋର ଢମ୍ପୁସିକି ମା ଗୋ ବଜାଇଲି ଢଙ୍କ
ଢୋଙ୍କରି ଯୋଗୀଙ୍କି ମା ଗୋ ହୋଇଲି ପ୍ରୀତ
ଢମାଳ ନ କର ମୁଁ ଯେ କହୁଅଛି ସତ
ଢାଳେ ହେତୁ ନାଶ ଗଲା ହେମନ୍ତ-ଦୁହିତ ।

ଣଶାଇଲେ ସ୍ୱପ୍ନେ କାହ୍ନୁଂ ଦରେକ ବରଣ
ଣମନୁଷ୍ୟ ଯେ ସେ ଅଛିତ ଅପାବନ
ଣକ୍ଷଖ ସାରିଲେ ମାଏ ହିଏ ଦୁହେଁ ହୋଇ
ଣଉହାଡ଼ରେ ଶୀଘ୍ରେ ଦେଖାଇଲେ ନେଇ ।
ତୀକ୍ଷ୍ଣ ଶର ବର ବାଳୀ ବାଜିଲା ହୃଦର
ତଡ଼ତେ ପଡ଼ିଲା ତଳ ନିଛେ ତା ମନ୍ଦର
ତକ୍ଷଣେ ତୋଳି ଧଇଲେ ତାହାଙ୍କର ଦାସୀ
ତୁରିତେ ମିଳିଲେ ମାଏ କାଙ୍କରେ ତା ଆସି ।
ଥରହର କରି ମାଏ ବୋଲନ୍ତି ବଚନ
ଥିର କର ମନ ମା ଗୋ ! ନୋହ ଅଚେତନ
ଥିଲି ଏତେ କାଳେ ମୋର ଦୁଲଣୀ ହୋଇଣ
ଥନ ଯଉବନ କାଳେ ଦେଉଛି ଜୀବନ ।
ଦଇନ ଜରି କହୁଛି ଶୁଣ ମୋର ମାୟେ
ଦନ୍ତେ ତରଣ ଧରିଣ ଓଲଗଇ ପାୟେ ।

ଦରିଦ୍ର ହୀନ ବୁଢ଼ାକୁ ଯେବେ ମୋତେ ଦେବୁ
ଦୁଇ ନୟନରେ ମୋର ମରଣ ଦେଖିବୁ ।
ଧରାଧରି ହୋଇ ମାଏ ଝିଅ କୋବାଇଲେ
ଧାଇ ସୁହୃସୁଲ୍ଲମାନେ ଚହଲ ପାଇଲେ
ଧାଇଁ ଆସି ତତକ୍ଷଣେ ମିଳିଲେ ସ୍ୱଜନ
ଧର୍ମପୁଣ୍ୟକାଳେ କମ୍ପା କରୁଛ ରୋଦନ ।
ନାହିଁ କି ସଂସାର ମଧ୍ୟେ ରଜାର କୁମର
ନିର୍ଲଜ ବୁଢ଼ାକୁ ସୁନ୍ଦରୀକି କଲ ବର
ନୋହିଲେ ବୁଡ଼ିବୁ ମାଏ ଝିଅ ଦୁହେଁ ହୋଇ
ନୋହିଲେ ମରିବୁ ସ୍ୱହସ୍ତରେ ବିଷ ଖାଇ ।
ପଞ୍ଚ ରତନ ମାଣିକ୍ୟ ମୁକୁତା ଗୁନ୍ଥା ନାହିଁ
ପୋଡ଼ୁ ପୋଡ଼ୁ ଜୀବନ ପରସ ରଜା ହୋଇ
ପିଅର ଜନନୀ ତୁମ୍ଭ ଜୀବନ ଧିକ ତ
ପାଳିଅ ବୁଢ଼ାକୁ ଦେଇ ରତନ ଲୋଭ ବଶ ;
ଫରମାଣ ଦେଇଛନ୍ତି ହେମନ୍ତ ସ୍ୱଜନ
ଫାଇ କେତେ କହିବା ଗୋ ସେହୁ ବଡ଼ଜନ
ଫଳେଣ ଜାଣିବା ପଛେ ତ.ହାଙ୍କର ଗୁଣ
ଫରସେ ସେବଲେ ଗୌରି ପାଇବ କାରଣ ।
ବିଗ୍ରର ନ କର ମାଏ ଝିଅ ଦୁହେଁ ତୁମ୍ଭେ
ବିକଳ ମନରୁ ଛଳ କହୁଅଛୁଁ ଆମ୍ଭେ
ବ୍ରହ୍ମା ବିଷ୍ଣୁ ଦେବତାଏ ଛନ୍ତି ତାଙ୍କୁ ବେଢ଼ି ,
ବଡ଼ ଭାଗ୍ୟବନ୍ତ ଗୌରି ପୁଣ୍ୟେ ଅଛ ବଢ଼ି ।
ଭାଲପଟେ ଲେଖନ ଯା କରିଛି ବିଧାତା
ଭଲ ଭାଗ୍ୟବନ୍ତ ଗୌରି ଆମ୍ଭର ଦୁହିତା
ଭୋଜନର ବେଳେ ରାଣୀ ମିଳିଲେକ ଆସି
ଭିତରେ ମଣୋହି ସଞ୍ଜା ତିଆଣ କରସି ।

ମହାଦେବଙ୍କ ମନବ୍ୟଥା ଛଡ଼ାଇ ସଜନ
ମିଳିଲେ ଯେ ସର୍ବଜନ ବଭୁର ଆସ୍ଥାନ ।
ମଙ୍ଗଳଣ କଲେ ତହିଂ ହଳଦୀ ଚନ୍ଦନ
ମଙ୍ଗଳ ମହୁରୀ ଶଙ୍ଖ ବାଜେ ଘନ ଘନ ।
ଯୁବତୀ ସକଳ ମିଳି ହୁଳହୁଳି ଦେଲେ
ଜଗମୋହନୀଙ୍କ ଦିବ୍ୟ ବେଶ କରାଇଲେ
ଜାଈଫୁଲ କନିଆର ଖୋସାରେ ଖୋସିଲେ
ଯତନେ କସ୍ତୁରୀ ଚିତା କପାଳରେ ଦେଲେ ।
ଚନ୍ଦ୍ର ଓଡ଼ିଆଣୀ ଚୂଡ଼ି ମଥାରେ ସୀମନ୍ତ
ଗ୍ରାମ ଅଳକେଶଙ୍କ ଚୂଡ଼ି ନାକେ ଗଜମୋତି
ରୁଣୁ ଝୁଣୁ ବାଜୁଅଛି ପୟରେ ନୂପୁର
ରାଜୀବଦଳ-ଲୋଚନେ ରଞ୍ଜିଲେ କଜ୍ଜ୍ୱଳ ।
ଲତାବଳି ପାଟେ ପିନ୍ଧି ନେତେ ଉତ୍ତରୀଣ
ଲାବଣ୍ୟଚନ୍ଦ୍ରବଦନୀ ଲକ୍ଷେ ଲକ୍ଷ୍ମୀ ଜିଣି
ଲବଙ୍ଗ ଚଉଁରୀ ମୁଜା ଆଣି ଦଢ଼ାଇଲେ
ଲଳିତେ ମଙ୍ଗଳ ଗୀତ କାମିନୀ ଗାଇଲେ ।
ବ୍ରହ୍ମା ଆଚାର୍ଯ୍ୟ ହୋଇଣ ବେଦୀରେ ବସିଲେ
ବରକୁ ସେ ଜଣ ଦଶ ତୋଳି ବସାଇଲେ
ବାସବର୍ଗ ବନ୍ଧୁ ବାକ୍ୟ ଅସରଳା ସୂତା
ଦସିଲେ କଣ୍ଠମ୍ବା ମାଡ଼ ବାଲୀ ଘେନି ପିଢ଼ା ।
କ୍ଷୀରରେଣ ବାନ୍ଧିଲେ ମୁକୁଟ ପଞ୍ଚଶାଖା
ଶୋଇପଡ଼ି ବୁଢ଼ା ଖାସୁ ଖାସୁ ଗଲା ମୂର୍ଚ୍ଛା ।
ଶାଶୁ ଆଦି ସମସ୍ତେହେଁ ବୋବାଳି ଛାଡ଼ିଲେ
ସଚେତ ପାଇଲା ବୁଢ଼ା ତୋଳି ବସାଇଲେ ।
ଯନ୍ତ୍ରୋକ୍ତେ ହସ୍ତ ଯୋଡ଼ଣ କଲେଣ ସେ ନାରୀ
ସତ୍ୱରେଣ ଦେବତାଏ ଗଲେ ଯେଝା ପୁରୀ

ସନ୍ତୋଷେଣ ନାନା ମିଳି ଜୁଆ ଖେଳାଇଲେ
ସତ୍ୱରେଣ ବରକନ୍ୟା ବେଦୀରୁ ଉଠିଲେ ।
ସମସ୍ତେ ବସିଣ ପଞ୍ଚ ଗ୍ରାସାଦି ସାରିଲେ
ସଖୀ ସଙ୍ଗାତୁଣୀମାନେ ମନ୍ଦଶଯ୍ୟା କଲେ
ସୁରଙ୍ଗେଣ ବରକନ୍ୟା କରୁଛନ୍ତି ଭାବ
ଶୋଭା ପାଉଛନ୍ତି ଦୁହେଁ ରତି କାମଦେବ ।
ହେମନ୍ତର ରାଣୀ ଦେଖି ସନ୍ତୋଷ ହୋଇଲେ
ହୀନ ପରପଞ୍ଚ ବେଶ ଯନ୍ତ୍ରଂ ଚଳାଇଲେ
ହୋଇଲେ ସନ୍ତୋଷ ସେ ସକଳ ଲୋକ ଦେଖି
ହାସ୍ୟ କରୁଛନ୍ତି ସଖୀ ସଙ୍ଗାତୁଣୀ ଦେଖି ।
ଛଛନ୍ଦେ ଚଉଠି ସାରି କାଦୁ ଖେଳି ଗଲେ
ଛ ସାତ ଅଷ୍ଟମଙ୍ଗଳା ଉଛବ ସାରିଲେ
କ୍ଷିତପତି ଠାକୁର ସେ କପିଳାସେ ସ୍ଥିତି
କ୍ଷୁଦ୍ର ବୁଦ୍ଧି ବଚ୍ଛାଦାସ କଳସା ପଢ଼ନ୍ତି ।

---

# ଲକ୍ଷ୍ୟବିନ୍ଧା

## (ମହାଭାରତ—ସାରଳା ଦାସ)

ବ୍ରାହ୍ମଣ ସ୍ୱରୂପ ଧରିଲେ ପଞ୍ଚୁବୀରେ
ନି କଚ୍ଛ ବସନ ଆଭରଣ କଟିରେ ।
ନିବଗୁଣ ପଇତା କନ୍ଧରେ ଉତ୍ତରି ହୋଇଅଛି,
ବେଦ ଆଧ୍ୟାନ ମନ୍ତ୍ରପୋଥି ସବୁରି କାଖେ ଅଛି ।
ଦ୍ୱାଦଶ ଟିକା ଶରୀରେ ଶ୍ରୀବତ୍ସଲକ୍ଷଣ
କାଖେଣ ବେଦ କରଣ୍ଡି ଯେ ପ୍ରତ୍ୟକ୍ଷେ ବ୍ରାହ୍ମଣ ।
କାନ୍ଧିରେ ଛତା ସ୍ରୁବ ସ୍ରୁଚ ପ୍ରୋକ୍ଷଣି
ପାଞ୍ଚଙ୍କର ଶରୀର ବିକାଶଇ ସୁବର୍ଣ୍ଣ କେଶାଟି ଛାଣି ।
ଗୋପ୍ୟାନ ଦୋହୋରା ଅଣ୍ଟିରେ କୁଶବାଡ଼
ଚନ୍ଦ୍ରସ୍ୱାମୀ ଦେବତା ବଜାୟେକ ପେଡ଼ ।
ଷଷବୃଦ୍ଧ ଛଡ଼ି ବ୍ରାହ୍ମଣସ୍ୱରୂପ
ସହିତୁ ପାଣ୍ଡବେ ଚଳନ୍ତି ଗୋପ୍ୟାନ ସ୍ୱରୂପ ।
ଗଡୁ ତମ୍ବାପାଣି କରେ ଅଛଇ ଜପାମାଳୀ
କଣ୍ଠେଣ ତୁଳସୀ ରୁଦ୍ରାକ୍ଷର ମାଳୀ ।
( ଯେବଣପି ଗୋପ୍ୟାନ ରୂପେ ଲୁଗୁଇଲେ କାୟେ
ପ୍ରତ୍ୟକ୍ଷେ ଦିଶୁଛନ୍ତି ସେ ନିର୍ଧୂମ ଅଗ୍ନି ପ୍ରାୟେ ।)
ଛନ୍ଦା ମଣ୍ଡପ ପଶ୍ଚିମ ଆଡ଼େ ବ୍ରାହ୍ମଣଙ୍କର ସଭା
ମହାସମ୍ଭରେଣ ଦିଶନ୍ତି ସେ ମହାଶୋଭା ।
ବ୍ରାହ୍ମଣସଭାରେ ବିଜୟେ ପଞ୍ଚୁବୀର
କି ସେ ପ୍ରତ୍ୟକ୍ଷେ ବ୍ରହ୍ମା ଇନ୍ଦ୍ର ବରୁଣ ରୁଦ୍ର କୁବେର ।
ବସୁଦେବ ନାମେ ଏକଇ ଦ୍ୱିଜବର
ବଇତରଣୀ ନଦୀର ଈଶାନ ନଗ୍ରପୁର ।

ବନ୍ଧାଇ ଧାର୍ମିକ ସେ ଅଛଇ ଯଜୁର୍ବେଦୀ
ଧାର୍ମିକ ବିବେକ ସେ ମନ୍ତ୍ରେଣ ପ୍ରସିଦ୍ଧି ।
ଗୁଣବନ୍ତ ବ୍ରାହ୍ମଣ ସେ ପାଣ୍ଡବଙ୍କ ରୂପ ଗୃହ୍ମ
ଏ ପାଞ୍ଚଙ୍କଇ ମୂର୍ତ୍ତି ବ୍ରାହ୍ମଣ କୁଳେ ନାହିଁ ।
ଆକାଶୁଂ ବିଜୟେ କଲେ କି ପଞ୍ଚ ଦିଗପାଳେ
କବଣ ଦେଶୀ ବିଜୟ କଲେକ ଏ ରାଜ୍ୟ ପାଞ୍ଚାଳେ ।
ମାନବପ୍ରାୟେକ ନ ଦିଶନ୍ତି ଏହାଙ୍କର ତେଜ
ଅନ୍ତେଣ ଜାଣିମା ଏହାଙ୍କର ବଳ କାର୍ଯ୍ୟ ।
ଲକ୍ଷଣ ବିବେକ ଦେଖି ବସି ତ ଦେଲେ ଠାବ
ବ୍ରାହ୍ମଣଙ୍କର ମେଳେ ବସିଲେ ପଞ୍ଚ ଯେ ପାଣ୍ଡବ ।
ଭୀମସେନ ବିଚାରଇ ଏ ରାଜାଗଣମାନେ
ମହାସମୂରେ ବସି ଅଛନ୍ତି କଣକ ଆସନେ ।
କହିଁତ ଆଗ୍ୟାଂ ମୋତେ ଦେବେ କି ଯୁଧିଷ୍ଠି
କମ୍ପକମାନେ ମୋଡିବି ସବୁ ରାଜାଙ୍କର ମୁଣ୍ଡ ଗୋଟି ।
ଚଉଦିଗେ ରାଜାମାନେ ବସିଅଛନ୍ତି ସମୂରେ
ଦ୍ରୁପଦ ପୂଜା କରି ବସାଇଲେ ଅସ୍ଥାନରେ ।
ଗଙ୍ଗାରେ ସ୍ନାହାନ କରି ମଣୋହରେ ସର୍ବ ସୈନ୍ୟେ
ଆରୋହଣ ସାରି ଯେ ଅସ୍ଥାନେ ବିଜୟେ ।
କର୍ପୂର ତାମ୍ବୁଳ ଦିଅନ୍ତି ସବୁନ୍ତି
ଜଣେ ଜଣେ ସମ୍ଭାର୍ଜଇ ସଦାନନ୍ଦ ମନ୍ତ୍ରୀ ।
ଉତ୍ତର ଦକ୍ଷିଣ ଦିଗ ପୂର୍ବ ପଶ୍ଚିମ ଗୁର
ଯେ ଯାହାର ଆସନେ ବସନ୍ତି ଅବୋର
ଅନେକ ଉଚ୍ଛବ ଦ୍ରୁପଦ ଭୁବନେ
ରାଜାମାନେ ପ୍ରବେଶ ହୋଇଲେ ପଞ୍ଚ ଦଶ ଦିନେ ।
ଶ୍ରୀକରେ ଅର୍ଘ୍ୟ ଘେନି ଧୃଷ୍ଟ ଦ୍ୟୁମନ
ସମସ୍ତ ନୃପତିଙ୍କି କରଇ ସନମାନ ।

ଶିରେଣ ମଣିମୁକୁଟ ହୃଦେଣ ରତ୍ନମାଳା
କର୍ଣ୍ଣେଣ କର୍ଣ୍ଣକୁଣ୍ଡଳ ଶ୍ରବଣରେ ଝଗଲା ।
ଶ୍ରୀହସ୍ତେ ତାହୁଟି କଙ୍କଣ ପାଦେଣ ନୂପୁର
ହୀରା-ମଣି-ମୁକୁଟ ଶୋଭଇ ଯେ ଶିର ।
ଆଭରଣ ସୁସଜ୍ଜ ମୁକ୍ତମାଳମାନ
ଏହା ରାଜାଙ୍କେ ବରଣ ଶତେ ମାତ୍ର ସୁବର୍ଣ୍ଣ ।
ଦ୍ରୁପଦେ ଲକ୍ଷେ ରାଜାଙ୍କୁ ଏସନକ ସମ୍ମାନ
ସମସ୍ତ ରାଜାଙ୍କୁ ବରଣ କଲା ଏହି ବାଧ୍ୟ ।
ଅର୍ଘ୍ୟ ଘେନ ମିଳଇ ଦ୍ରୁପଦ ସଭାମଧ୍ୟସ୍ଥାନେ
ସମସ୍ତ ରାଜାଙ୍କୁ ଶତ ସହସ୍ର ମାନେ ।
ଜରାସନ୍ଧ ବୋଇଲା ଉଠ ହେ ଦ୍ରୁପଦ
କେଉଁଣ ତୋହୋର ବିଧାନ କହୁସି ଉଚିତ ବାରତ ।

ଦ୍ରୁପଦ ବୋଇଲେ ଦେବ ସାବଧାନେ ଶୁଣ ମୋ
ଅଗ୍ନିରୁ ଉତ୍ପନ୍ନ ମୋହୋର ଦୁହିତା ଶୁଦ୍ଧଧର୍ମୀ ।
କୋଟିଏ ଋଷି ଘେନ ମହାମୁନି ବେଦବ୍ୟାସ
ମହା ଅନନ୍ତ ଦ୍ରୌପଦୀ ହୋଇଲେ ପ୍ରକାଶ ।
ମୋହୋର ମନକାମନା କଲଇଁ ଯାହାର ଅର୍ଥେ
ଦଇବ ବିପରୀତ ସେ ନାଶ ଗଲେ ଅନନ୍ତେ ।
ତାହାର ତ ତୁଲ୍ୟ ବର ନ ପାଇଲି ମଧ୍ୟଭୁବନେ
ଦେଶୁ କରି ସ୍ୱୟଂବର ଡାକିଲି ବଦ୍ୟମାନେ ।
ମୋହୋର ବଡ଼ ଭାଗ୍ୟ ଦୁହିତା ଉତ୍ପୁଜାଇ
ଲକ୍ଷେକ ନୃପତି କେତେକ ଭାଗ୍ୟେ ଧାଇ ।
ସମସ୍ତେହେଁ ଦର ଦୃଢ଼ େ କର ଭଣା ଲକ୍ଷେକ ନୃପେ
କାହାଙ୍କୁ ବରିବ ଅଛି ତାହାକୁ କରିବ ନାହିଁ ।
ମହାଲୁଷ ପାଇଲି ମୋହୋର ବ୍ରତନିମନ୍ତେ
ଧନୁଯାତ୍ରେ କରି ବରଜନ୍ୟା ହୋଇବ ଯୁଗତେ ।

ଏହୁ ମହାସଭାରେ ଲକ୍ଷ ଯେ ବାନ୍ଧିବ ଗୋସାଇଂ
ଲକ୍ଷର ଚରିତ୍ର କହିଲି ଶୁଣ ସାବଧାନ ହୋଇଂ ।
ରାଧାଚକ୍ରେ ବୁଲଇ ଯେ ସହସ୍ରେକ ଧାର
କଣ୍ଠମୂର ମାଛ ଅଛି ତାହାଂର ଉପର ।
କୁସୁଳଚକ୍ର ପରିୟେ ବୁଲଇ ସେ ଚକ୍ର ଅନ୍ତରିତେ
ତଳେ ଯେତେକ ଧନୁ ଥୋଇଣି ଅଛି ଲକ୍ଷେ ବଳ ଯୁଗତେ ।
ରାଧାଚକ୍ର ବୁଲୁଅଛି ସାତ ତାଳ ଉଚ୍ଚେ
ତାଳେକ ଉପରେ ପଟ୍ଟାଏକ କଣ୍ଟିଲି ଅଛଇ ସୁସଜ୍ଜେ ।
ଲକ୍ଷେକ ବଳ ଧନୁ ଧରି ପଟ୍ଟ ଉପରେଣ ଉଠି
ତାହାଂର ତଳେ ଥୋଇଣ ଅଛି ତୀର୍ଥଜଳ ଘଟ ଗୋଟି ।
ତଳକୁ ଦୃଷ୍ଟି କରି ଉପରକୁ କରିବ ମୁଷ୍ଟି
ଚକ୍ର ଭେଦ ମାଛର ବାମ ନୟନ ଯିବ ଫୁଟି ।
ଏହେନେକ ସ୍ୱରୂପେ ଯେବେ ଲକ୍ଷ ବାନ୍ଧିବ
ମୋହୋର ଦୁହିତା ଦ୍ରୌପଦୀଙ୍କି ସେ ପ୍ରଦାନ ହୋଇବ ।
ଯେ ଲକ୍ଷ ବାନ୍ଧିବ ସେ ଲଭିବ କୁମାରୀ
ତାହାଂକ କେହି ତୁମ୍ଭେ ନୋହିବ ଦ୍ୱନ୍ଦ୍ୱକାରୀ ।
ଅଛ ତୁମ୍ଭେ ନୃପତି ମହା ମହା ମଲ୍ଲ
କନ୍ୟା ନିଅନ୍ତେ ତାହାକଇଂ ନ କରିବ ଗୋଳ ।
ଏଥକୁ ସ୍ୱାମୀ ତୁମ୍ଭେ ମୋତେ କହିବା ଦୃଢ଼ ବାଣୀ
ତେବେ ସେ ସଭିକୁ ମୋହୋର ଦୁହିତା ପାରଇ ଆଣି ।
ସମସ୍ତ ରାଜାଏ ବୋଇଲେ ଯେହୁ ସେ ସତ୍ୟ ସତ୍ୟ
ଯାହାର ସୁକର୍ମ ତାହାକୁ କନ୍ୟା ହୋଇବ ପ୍ରାପତ ।
ଏଥକୁ ନ ସହୁଂ ଯେ କରି ଲେଉଡ଼ଇ ଦ୍ୱନ୍ଦ୍ୱ
ସମସ୍ତ ନୃପତି ହୋଇ ତାହାଂକୁ କରିବୁ ଶିରଚ୍ଛେଦ ।
ଏ କଥାମାନ ସମସ୍ତ କରିଣ ନିର୍ମିତ
ନିଜ ଭୁବନକୁ ଚଳିଲା ଦ୍ରୁପଦ ।

ଶାଖଣ୍ଡି ଧୃଷ୍ଟଦ୍ୟୁମନ ଦେଲା ପୁନ ସଙ୍ଗ
ଦ୍ରୌପଦୀ କନ୍ୟାକୁ ପ୍ରବେଶ କରାଇ ।
କେଶିନୀ ନାମେଣ ଯେ ଅଟଇ ମୃଦୁଫୁଲ୍ଲ ବାଳୀ
ସର୍ବ ଅଳଙ୍କାର ହୋଇ ଲକ୍ଷେକ ପୋଇଲ ।
କନ୍ୟାକୁ ସ୍ନାହାନ କରାନ୍ତି ସର୍ବେ ମିଳି
ନାନା ସୁଗନ୍ଧେଣ କବରୀ ଭାର ସମ୍ଭାଳି ।
କୁଙ୍କୁମ ଲେପନ କରଣ ଶରୀରେ
ମୃଗନାଭି କସ୍ତୁରୀ ଲେପନ ହୃଦୟରେ ।
ଆଲହ ଭ୍ରମର ଢାଳି ଶୁଖାବନ୍ତି କେଶ
ଅଙ୍ଗେ ପରିଧାପନ କରାନ୍ତି ଝୀନ ବାସ ।
ଜାଈ ଯୁଈ ମଲ୍ଲୀ ମାଲତୀ ସେବତୀ ପାଖୁଡ଼ି
ସୁବାସ କୁସୁମେ ସାଞ୍ଜୋଇଲେ କବରୀ
ସୁବର୍ଣ୍ଣ ଖୋଷା ଗୋଟି ସାଞ୍ଜୋଇ ଅନ୍ତରସେ
ଲଲାଟେ ମଧ୍ୟକରେ କୁରୁକୁନ୍ଦାନ୍ତି ପାଶେ ।
ତହିଁର ଉପରେ ଖଞ୍ଜିଲେ ମୁକୁତାର ଜାଲି
ଲଲାଟ ପାଟିରେ ଅଷ୍ଟରତ୍ନ ଖଞ୍ଜିଲେ ମୃଦୁସୁଲି
କର୍ଣ୍ଣରେ ତଡ଼କ ନାସିକାରେ ରତ୍ନଫୁଲି ।
ହୃଦୟରେ ଅଷ୍ଟରତ୍ନ ହାରମାନ ଝଳି ।
ଭୁଜେ କେୟୁର କଙ୍କଣ ଶୋହିଲ ରତ୍ନଚୁଡ଼ି ।
ଅଷ୍ଟରତ୍ନେ ଜଡ଼ିତ ଅଙ୍ଗୁଳିର ମୁଦି ।
ପାଦେଣ ନେପୁର ଝଲକନ୍ତି ଖାର
ନ ସହଇ ସୁନ୍ଦରୀ ବନ୍ଧିତ ରତ୍ନଭାର ।
ମିଳଣ ଗଣିକାୟେ କରନ୍ତି ଅନୁଲେଖା ।
ସୁବେଶ ବେଶନମାନ ଦେବୀ ବୁଝଇ ବମୁଖ
ଉପରେ ପରିଧାପନ ଦ୍ରାସିନେତ ପାଟ ଗୋଟି
ଅନଳ ତେଜ ଜାଣି ବକାଶଇ ଫୁଟି ।

ଛୁଲେଣ ଅଛନ୍ତି ଯେ ଲକ୍ଷେକ ପରିବାରୀ
ତାହାଙ୍କର ବେଶମାନ କହୁ ତ କିପରି ।
ସମ୍ପୂର୍ଣ୍ଣ ଯୁବାସ୍ତ୍ରୀଏ ଯେ ଅଟନ୍ତି ରତ୍ନକାନ୍ତି
ଆନ କନ୍ୟାମାନଙ୍କ ଉପରେ ଅଟଇ ଗୁଣନିଧି ଯୁବତୀ ।
ଅମର ବଳାସୁଣୀମାନେ ମିଳୁଛନ୍ତି ଆସି
ଆନ ରାଜାଙ୍କୁ ନାୟିକା କୃଷ୍ଣଙ୍କୁ ଅଟଇ ଦାସୀ ।
ଅନେକ ବେଶନ ଯେ ସମସ୍ତ ଯୁବତୀ
ସ୍ତ୍ରୀ-ରତ୍ନ-ନାୟିକା ସେ ଜଗତ ମୋହନ୍ତି ।
ସହସ୍ରେକ ଚାମର ସେ ଢାଳନ୍ତି ଚଉକଡ
ସହସ୍ରେ ଅଲଟ ସୁବର୍ଣ୍ଣର ଝଲକନ୍ତି ।
ଝିଲ୍ଲରିଲେ ସୁନ୍ଦରୀ ସହସେ କନକର ଛତା
ସମ୍ମୁଖେ ନୃତ୍ୟ କରନ୍ତି ସହସ୍ରେ ବନିତା
ମଧୁର ରସ ବାଦ୍ୟ ବଜାନ୍ତି ବ୍ରହ୍ମବୀଣା
କୋକିଳ ଧ୍ୱନି ପ୍ରାୟେ ଗାଆନ୍ତି ଗାୟେଣୀ ।
ସୁବର୍ଣ୍ଣର ଯୋଗାଡ଼ ନେଇ ସହସ୍ରେ ପରିବାରୀ
ସହସ୍ରେ କନ୍ୟା ଅଗେ ପୁଷ୍ପ ବୃଷ୍ଟି କରି ।
କନକର ହାନ୍ଦୋଳରେ ବିଜୟେ ପାଞ୍ଚାଳୀ
ଚଳନ୍ତି ଯୁବତୀ ସେ ବିଶୃଙ୍ଖ ଶୃଙ୍ଖଶାଳୀ ।
ନାନା ବାଦ୍ୟନାଦ ଧ୍ୱନି ଶୁଭଇ ଚହଳ
ଶରଦ ଉତ୍ସବ ଯେସନେ ମାତଙ୍ଗବୃନ୍ଦ ମେଳ ।
ଜନକ ଶୋଭାବନ ଶରୀର ବିଦାଣି
ଦେଖିଣ ରାଜାଗଣେ ସମସ୍ତେ ପରଶଂସି ।
ଦ୍ରୌପଦୀ ବଦନ ଦେହ ନ ପାରନ୍ତି ଚାହିଁ
ସ୍ତ୍ରୀଙ୍କର ମୁଖ ଚାହିଁ ସମସ୍ତେ ହୋନ୍ତି ମୋହ ।
ଯେ ସେ ଦେଖୁଛନ୍ତି ଲକ୍ଷେକ ଯୁବତୀ
ଲକ୍ଷେ ରାଜାଙ୍କୁ ଯେ ଯୋଗାନ୍ତି ପ୍ରିୟବତୀ ।

ସଭାର ମଧ୍ୟେ ନେଇ ଉତ୍ତରିଲେ ବାଳୀ
ସମସ୍ତ ଗଣିକାୟେ ମଙ୍ଗଳ ଧ୍ୱନି ତୋଳି ।
ମେଢ଼ର ମଧ୍ୟେ ବଜାୟେ ଦ୍ରୌପଦୀ
ପୌର୍ଣ୍ଣମୀର ଚନ୍ଦ୍ର କ ବିକାଶିଲା ନିଶାରନ୍ତ ।
ସଭାରେ ମିଳିଲେ ଧୃଷ୍ଟ ଯେ ଦ୍ୟୁମନ
ରାଜାଗଣମାନଙ୍କୁ ଯେ ବୋଲନ୍ତି ବଚନ ।
ଲକ୍ଷେକ ରାଜା ତୁମ୍ଭେ ଯେ ବସିଲ ଆସ୍ଥାନେ
ସମସ୍ତଙ୍କୁହିଁ ବଢ଼ିଲି ବରଦେଶ ବିଧାନେ ।
ମୋହୋର ବହୁଣୀ ଆସିଲ ଦ୍ରୌପଦୀ
ବର୍ଣ୍ଣିବ କେବେ ତାହାର ରୂପ କାନ୍ତି ।
ଯେ ପାରଇ ଲକ୍ଷ୍ୟ ବିନ୍ଧିବ ଗୋସାଇଁ
ସେ ସ୍ୱୟମ୍ବର କଲି ମୁଁ ପାଞ୍ଚାଳୀର ପାଇଁ ।

—o—

# ରାବଣର ଅଭ୍ଯ୍ରପ୍ରକାଶ

## (ଜଗମୋହନ ରାମାୟଣ—ବଳରାମ ଦାସ)

ସହସ୍ରେ କୁମାରୀ ଦେଲେକ କୃଣଧାରୀ
କେବଣ ଯୁବତୀ ଅବା ତାହାଙ୍କୁ ଅଛେ ସରି ।
ଇନ୍ଦ୍ର ଅପସରୀ'ଯେ ଅଛନ୍ତି ତୋର ପୁରେ ।
ବିଦ୍ୟାଧରୀ କିନ୍ନରୀ ଗନ୍ଧର୍ବ ତୋର ପୁରେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଯେତେକ ରୂପବନ୍ତୀ
ଏ ଲଙ୍କାପୁରେ ତୋର ଯେ ଅଛନ୍ତି ଯୁବତୀ ।
କେବଣ ସ୍ତ୍ରିରୀ ତାଙ୍କୁ ପଛାନ୍ତର କି ନା ?
ଏ°ମର୍ତ୍ତ୍ୟମଣ୍ଡଳେ ଉପମା ନାହିଁ ନା ।
ଛଦ୍ୟ ଗନ୍ଧବାସ ଦିବ୍ୟ ଗନ୍ଧପୁଷ୍ପ
ଦିବ୍ୟ ଭୋଗମାନ କରୁ ଯେ ଦଶଈଶ ।
ଏକା ଯୁବତୀ ସିନା ଶ୍ରୀରାମଘରଣୀ
ତହିଁକି ଉପମା ତୁ ନ କର ଲଙ୍କମଣି ।
ଦେବା ସିତମ୍ବୁକୁ ଯାଉ ରାମ ଯତି
ନୋହୁ କଳହନ୍ଦ୍ୱ ନୋହୁ ଅପଖ୍ୟାତି ।
ନ ମରନ୍ତୁ ସନ୍ୟ ନିରଖ ହୋଇବା
ନ ଥାଉ ସୀତାକୁ ଯେ ବାହୁଡ଼ାଇ ଦେବା ।
ଏତେ ବୋଲି ରାଣୀ ଯେ ଦନ୍ତରେ ତୃଣ ଧରି
ରାବଣ ପାଦତଳେ ଯେ ପଡ଼ଇ ମନ୍ଦୋଦରୀ ।
ଉଠ ଉଠ ବୋଲି ବୋଲଇ ଲଙ୍କେଶ୍ୱର
ଆପଣେ ବଢ଼ାଇ ଯେ ଦେଲା ନିଜ କର ।
ମହାଦେଇକି ସେ କହଣ ତଆରିଲା
ଶୁଣ ଗୋ ଶଶୀମୁଖୀ ଯେ ବୋଲଣ ବୋଇଲା ।

ତୁ ଯାହା ବୋଲୁ ରେ ଏ କଥା ଅଟେ ସତ
ସୀତା ଦେଲେ ରାମ ଛାଡ଼ିବେ କୋପ-ଚିତ୍ତ ।
ଋଷିମୁଖେ ଉପହାସ୍ୟ ଉପୁଜିବ
ଏ ଦେହ ସଙ୍ଗି ଆରେ କେତେକ ନ ଥିବ ।
ସର୍ବଦା କାଳେ ମୁଁ ବଳ ଆଶେ କରଇ,
ଅନ୍ୟାୟ କଥାମାନ ମୁଁ ଭଲ ବିଚାରଇ ।
ଅସତ୍ୟ ମାର୍ଗେ ଚଳି ଅର୍ଜିଲି ଏତେ ଶିରୀ,
ବ୍ରାହ୍ମଣ ଦେବତାଏ ଯେ ଥାନ୍ତି ସେବା କରି ।
ଛପନ ଗଣ୍ଡା ଯୁଗରୁ ଯେ ଅର୍ଜିଅଛୁ ପାପ,
କେବଣହିଁ ପ୍ରକାରେ ନୁହଇ ସଙ୍କ୍ଷେପ ।
ଅବଶ୍ୟ ତ ପିଣ୍ଡରୁ ଯେ ପ୍ରାଣ ଛାଡ଼ି ଯିବ,
କାଳେକ ବଧାତା ମୋତେ ନର୍କଗତି ଦେବ ।
ଶ୍ରୀରାମ ନାରାୟଣ ଅଟନ୍ତି ଚକ୍ରଧାରୀ,
ପରମ ଲକ୍ଷ୍ମୀ ଅଟନ୍ତି ଯେ ଜନକ-କୁମାରୀ ।
ମୁହିଂ ଜାଣଇ ରାମ ଯେ ମାରିବାକ ମୋତେ,
ତେଣୁ ସେ ସୀତାଙ୍କୁ ନ ଦଅଇ କଦାଚିତେ ।
ବିଷ୍ଣୁର ହାଥେ ମୁଁ ନ ମରିବ ଯଦି,
କେମନ୍ତେ ପାପରାଶି ହୋଇବାକ ଛେଦି ।
ନିଜ ରୂପ ଧରି ଯେ ବୈକୁଣ୍ଠକୁ ଯିବ,
ବାରମ୍ବାର ଭୁବନେ ଦ୍ୱାରପାଳ ହୋଇବ ।।
କୁମ୍ଭକର୍ଣ୍ଣ ଭାଇ ମୋର ଆଗ ହୋଇ ଗଲା,
ଶ୍ରୀରାମ ନାରାଚେ ସର୍ବ ପାପ କ୍ଷୟ ହେଲା ।
ମୁହିଂ ଯିବଇଂ, ଏବେ ନ ପାରଇ ରହି,
ଯେମନ୍ତେ ଜନ୍ମିଲୁ ଶୁଣ ରେ ପ୍ରାଣସହି ।
ବିଷ୍ଣୁର ବୈକୁଣ୍ଠ ପଶ୍ଚିମ ଦ୍ୱାର ରଖୁଁ,
ବ୍ରହ୍ମା ରୁଦ୍ର ଇନ୍ଦ୍ର କାହାକୁ ନ ଲେଖୁଁ ।

ଧନେ ଟି ପରମ ଲକ୍ଷ୍ମୀ ଧବ୍ୟ କେଶ ହୋଇ,
ନାରାୟଣ ସନ୍ନିଧିରୁ ଚଳନ୍ତି ଗୃହମୁହାଁ ।
ଆଗେ ଓଗାଳିଣ ମୁଂ ବୋଇଲ ରାଗେ,
ସୁରମୁନିମାନେ ଯେ ଅଛନ୍ତି ନାରାୟଣଙ୍କ ସଙ୍ଗେ ।
ଏମନ ସମୟେ ମିବାର ନୁହଇ ଉଚିତ,
ତୁ ଯେ କୁଳବଧୂ ସିନ୍ଦୂର ଦୁହିତ ।
ଏକାନ୍ତ ସମୟେ ଯେ ତୋ ସ୍ୱାମୀର ସଙ୍ଗେଂ ଥିବୁ,
ଉଦ୍ୟାନ ସ୍ଥାନକୁ ଗୋ କେମନ୍ତ ହୋଇ ଯିବୁ ।
ଚହଁଲା ହୋଇଲେ ସେ ସୁର ମୁନି ଜନ,
ସମସ୍ତେ ହାଦେ ମୋର ସେ ଅଚିନ୍ତ ନନ୍ଦନ ।
ତାହାଙ୍କ ବିଚାରି କ ଉପୁଜବ ମୋତେ,
ବାଟ ଛାଡ଼ି ଦିଅ ହୋ ଦୋଷ-ନାହିଂ ତୋତେ ।
ଆଜ ଗୁରୁବାର ମୁଂ ସମୁଦ୍ର ସ୍ନାନ କଲି,
ଦର୍ଶନ କରିବାକୁ ବେଗେଂଣ ଅଇଲି ।
ଧନ ସୁଫଳ କରିବ ସ୍ୱାମୀମୁଖ ଚୃହିଂ,
ନମସ୍କାର କରିଣ ଯେ ଆସିବା ବେଗ ହୋଇ ।
ତୁ ହୋ ଚଣ୍ଡୀ ନାର କଠାଳ କମ୍ପା ନରୁ,
ଦେଖି ଆଗ୍ୟାଂ ମୋତେ ଦେଖଇ ମହାମେରୁ ।
ଦେବୀର ବଚନେ ମୁଂ ପ୍ରବୋଧ ନ ଗଲି,
ନଷ୍ଟ ବୁଲିଭଣ ଯେ ବଦନ୍ତ ମୁଖ କଲି ।
ତେଣୁ ବାହୁଡ଼ିଲି ସବ-ସୁଲକ୍ଷଣୀ
ଶାପ ଦେଲି ମୋତେ ସେ ଜାତି ଜମଳଣୀ ।
ରାକ୍ଷସ ମୂରତି ଧରି ତରିଲି,
ସ୍ୱାମୀର ସେବା ମୋର ଯେ ବ୍ୟର୍ଥ କରାଇଲି ।
ଯାଅସି ଅଂଶୁର ବଦନ ତୋର ହୋଉ,
ଏ ମୋହୋର ଆଗ୍ୟାଂ ଯେ ଯୁଗେ ଯୁଗେ ଥାଉ ।

ଏସନ ବୋଲି ଯେ ବାହୁଡ଼ି ଦେବୀ ଗଲା,
ତକ୍ଷଣେ ମୁଖ ମୋର ଯେ ବିକଟ ହୋଇଲା ।
ଶ୍ରୀହରିର ସମ୍ମୁଖରେ ଯେ ଜଣାଇଲି ଯାଇଁ,
ଗଦା ପକାଇଣ ମୁଁ ଶୁତିଲି ବୋବାଇ ।
ସ୍ୱାମୀ ବୋଇଲେ ତୁ ଉଠ ଉଠ ଚଣ୍ଡ,
ଦେବୀର ବଚନେ ଯେ ବିକଟ ତୋର ମୁଣ୍ଡ ।
ସେନି ପ୍ରତିକାର ଦୟା ତୋତେ କଲି,
ଦେଖିଣ ତୋତେ ଯେ ଆଜ ଏ ବର ଦେଲି ।

କମଳାର ବଚନ ନୁହଇ ପୁଣ ଆନ
ପୂର୍ବ ପାତକେ ପାଇଲୁ ଅସୁର ବଦନ ।
ତୁ ମୋହୋର ବିଶ୍ୱାସ ଅଟୁ ପରମ ହିତ,
ତୋତେ ସମର୍ପଇ ମୋହୋର ଅର୍ଥବିତ୍ତ ।
ନ ବିଚାରି ତୋତେ ଯେ ପ୍ରିୟା କୋପ କଲା,
କେଉଁର କଥାକୁ ଯେ ନ ବୁଝି ବୋଇଲା ।
ଏଥକୁ ପ୍ରାଭବ ଯେ ପାଇବ କମଳାକ୍ଷୀ,
ଭୃତ୍ୟକୁ ଯେବେ ତାର ଏତେକ ଦୋଷ ଅଛି ।
ତୋତେ ଯେବେ ଅସୁର କଲା ଶାପ ଦେଇ,
ମୃତ୍ୟୁ ଲୋକେ ଜନମୁଂ ସେ ମାନବ ତନୁ ବହି ।
ବିଶ୍ରବା ଋଷିଙ୍କର ହୋଇବୁ ତୁ ସୁତ,
ମାତାଗୁଣ ବହି ଯେ ହୋଇବୁ ଦଇତ ।
ଆମ୍ଭେ ଦଶରଥ ଘରେ ଜାତ ହୋଇ,
ଗୋଦାବରୀ ନଦୀ କୂଳରେ ଥିବୁ ରହି ।
ଏ ଲକ୍ଷ୍ମୀ ଆମ୍ଭର ଯେ ଅଟଇ ମନୋହାରୀ,
ନାମ ବୋଲାଇବ ଏ ଜନକ କୁମାରୀ ।
ତୁ ମାୟା ରୂପରେ ଯେ ଚୋରାଇ ନେବୁ ସୀତା,
ଲଙ୍କା ପୁରରେ ନେଇ ଥୋଇବୁ ଜଗତମାତା ।

ବନ୍ଦୀ ପ୍ରକାରେଣ ରଖାଇଣ ଥିଲୁ,
ଅନେକ ଭର୍ତ୍ସନା ଯେ ତାହାଙ୍କୁ ବୋଲିଲୁ ।
ଏ ଯେ ଲକ୍ଷ୍ମୀ ଦେବତେ ଯେ ବୋଇଲି ନ ଜାଣି;
ସେହୁ ଭାରିଯା ଯେ ତୁ ମୋର ସେବକ ପୁଣି ।

× × ×

ବନବାସ ଯାନ୍ତେ ଯେ ଗଲୁଁ ମୁଂହି ଦେଖି,
ସଙ୍ଗରେ ଅନନ୍ତ ଜାନକୀ ପଦ୍ମମୁଖୀ ।
ବନଫଳ ଖାଇ ଯେ ଚଳୁଥିଲେ ବାସ,
ପଞ୍ଚବଟୀ ବନେ ଯାଇଲେ ମହାବାସ ।
ବୋଇଲି ବ୍ରହ୍ମଋଷି ଯେ ମୋହୋର ନାମନ୍ତେ,
ଏତେ ଦୁଃଖ ପାଇଅଛନ୍ତି ଜଗନ୍ନାଥେ ।
ବେଗେ ମୁଂ ସୀତାଙ୍କୁ ନେବି ଏଥିଂ ହରି,
ତେବେ ସେ ଦୁଃଖ ଯେ ସହିବ ସବୁଙ୍କର ।
ମୁହିଂ ରାକ୍ଷସତନୁ ଛାଡ଼ିବଇଂ ଏବେ,
ସ୍ୱର୍ଗେ ସୁଖେଂ ମୁଂ ଯେ ବସିବଇଂ ତେବେ ।
କମଳା ସହିତେ ଯେ ଯିବେ ନିଜବାସେ,
ବୈକୁଣ୍ଠେ ସେବା ମୁଂ କରିବ ବିଶ୍ୱାସେ ।
ଏସନେ ବଚନ ଯେ ଶୁଣିଲେ ବଇଦେହୀ,
ଶ୍ରୀରାମ ବାଣେ ମଲେ ଯେ ମୋକ୍ଷ ହୋଇ ଯାଇ ।

× × ×

---

# ଏକାଦଶସ୍କନ୍ଧ

## ଯଦୁ-ଅବଧୂତ ସମ୍ବାଦ

### ୰ ଜଗନ୍ନାଥ ଦାସ

### ଅଷ୍ଟମ ଅଧ୍ୟାୟରୁ:—

ଶ୍ରୀଭଗବାନୁବାଚ:—

ରାଜା ବଚନେ ଅବଧୂତ
ତକ୍ଷଣେ ହୋଇ ପ୍ରସନ୍ନୀଭୂତ ।
ରାଜାର ମୁଖ ଗୃହ୍ଣି ଧୀରେ
ବୋଲଇ ବଚନ ଗମ୍ଭୀରେ ।

ଅବଧୂତ ଉବାଚ:—

ଶୁଣ ହେ ଯଦୁ ନୃପବର
ଅନେକ ଗୁରୁ'ଛନ୍ତି ମୋର ।
ଶୁଣିଲେ ଯେବେ ତୋର ଇଚ୍ଛା
ଯାହାର ତହୁଁ ଯେବା ଶିକ୍ଷା ।
ଯେଣୁ ମୁଁ ବୁଲଇ ମହୀଟରେ
କହିବ ଶୁଣ ମନ ସ୍ଥିରେ ।
ପୃଥିବୀ ପବନ ଅନଳ
ଆବର ଆକାଶମଣ୍ଡଳ ।
ରବି ଶଶାଙ୍କ ଆପ ସିନ୍ଧୁ
ଭ୍ରମର ସର୍ବ-ସୁଷ୍ଠୁବନ୍ଧୁ ।
କପୋତ ପକ୍ଷୀ ଗୁରୁ ମୋର
ପତଙ୍ଗ ସର୍ପ ଅଜଗର ।
ମୀନ ପିଙ୍ଗଳା ବେଶ୍ୟା-ନାରୀ
କୁରର କୁମର କୁମାରୀ ।

ହସ୍ୱଣ ଉର୍ଣ୍ଣନାଭ କଣ୍ଠୀ
ଶର୍-ନୀରଜ ମଧୁହାରୀ ।
ଆବର କୀଟ ପେଶସ୍କାରୀ
ମୁଁ ଏତେ ଗୁରୁ ଅଛି କରି ।
ଚବିଶ ଗୁରୁ ମୋର ଏତେ
ଶୁଣ ରାଜନ ତୋଷ ଚିତ୍ତେ ।
ଯାହାର ଠାହୁଁ ଯେବା ଶିକ୍ଷା
ମୁହିଁ ପାଇଲି ଗୁରୁଶିକ୍ଷା ।
ତାହା ମୁଁ ତୋହର ସମ୍ମୁଖେ
ଶୁଣ କହିବି ଏକେ ଏକେ ।
ଏ ଜୀବଆତ୍ମା ପରବଶ
ଅଦୃଷ୍ଟ କାରଣ ବିଶ୍ୱାସ ।
ଦୁଃଖପୀଡ଼ିତ କର୍ମଫଳେ
ସଂସାରେ ଜନ୍ମି ଅବହେଳେ ।
କର୍ମ ଆଦର ସହେ ଦୁଃଖ
କେବେହେଁ ନୁହଁଇ ବିମୁଖ ।
ଦୁଃଖେ ନ ଛାଡ଼ି ନିଜପଥ
ଚଞ୍ଚଳ ନ କରଇ ଚିତ୍ତ ।
ଏଣୁ ମୁଁ ଦୁଃଖ ସୁଖ ସହି
ଏହା ଶିଖିଲି ଭୂମିଠାହୁଁ ।
ଆହୁରି ତାର ଉପଦେଶ
ଶିଖିଲି ଶୁଣ ହେ ନରେଶ ।
କର୍ମ କଷଣ ସହି ଧୀରେ
ବଞ୍ଚଇ ପର ଉପକାରେ ।
ଧନ୍ୟ ଜୀବନ ଏ ଜଗତେ
ଯେ ପ୍ରାଣ ଧରେ ପରହିତେ

ଧନ୍ୟ ଜୀବନ ଧନ୍ୟ ତାର
ଦୁର୍ଲଭ ଦର୍ପ ଏ ବେଭାର
ମୁଁ ଏହା ବୃକ୍ଷଙ୍କର ଠାରୁଁ
ଶିଖିଲ ପଣ୍ଡିତ ଗହନଁ ।
ବାହ୍ୟ ଅନ୍ତର ବାୟୁ ଦୁଇ
ପ୍ରାଣ ବାୟୁରୁ ଶିକ୍ଷା ଏହ
ଆହାର ମାତ୍ରେ ତାର ରକ୍ଷା
ରୂପରସାଦ ନାହିଁ ବାଞ୍ଛା
କେବଳ ଦେହ ମାତ୍ର ଧର,
ଇନ୍ଦ୍ରିୟ ତର୍ପଣ ନ କର
ରକ୍ଷା ନ କଲେ ନିଜ ପ୍ରାଣ
ବିକଳ ଭାବ ଲଭେ ମନ
ମନ ବିକଳେ ପ୍ରାଣ ନାଶ
ଏହୁ କି ନୁହଁଇ ପ୍ରକାଶ
ଏ ଯେନ ପ୍ରାଣକୁ ରଖିଛି
ଅଧିକ ବାଞ୍ଛା ନାହିଁ କିଛି ।
ଜ୍ଞାନ ଉଦ୍ଦେଶେ ଶୁଦ୍ଧ ମନ।
ନ କର ମାୟା ଜଡ଼େ ଛନ୍ଦ।
ଯୋଗୀର ଧର୍ମ ଜାଣ ଏହ
ଅସତଭୋଗେ ଯେବେ ଥାଇ,
ନ ଘେନେ ତାର ଗୁଣ ଦୋଷ,
ଇନ୍ଦ୍ରିୟ ଭୋଗ ସୁଖ ଲେଶ ।
ଦେଖ ପବନ ଏ ଶରୀରେ
ବହଇ ଅନ୍ତର ବାହାରେ
ସର୍ବତ୍ର ବହଇ ସଂସାରେ
ଅଦେହ ସର୍ବଗନ୍ଧ ହରେ

ଏରୂପେ ସର୍ବଦେହେ ଥାଇ
ଉଦାସୀ ଜନ ପ୍ରାୟେ ହୋଇ
ସମେ ବସଇ ସର୍ବଦେହେ
କାହାର ସଙ୍ଗେ ସଙ୍ଗ ନୋହେ
ମୁ ଏହା ପବନଁ ବଗୁର
ଶିଖିଲ ଗୁରୁ ଶିକ୍ଷା କରି
ଏଣୁ ପବନ ପ୍ରାନ୍ତେ ହୋଇ
ସର୍ବତେ ଥାଇ ନ ମିଶଇ ।
ଆକାଶ ପ୍ରାୟେ ସର୍ବଠାରେ
ବ୍ୟାପିଛି ଆତ୍ମ ନିର୍ବିକାରେ
ଦେହରେ ଥାଇ ସଙ୍ଗ ନୋହେ
ଘଟ ଆକାଶ ପ୍ରାୟେ ରହେ
ମେଘ ଯେସନେ ଶୂନ୍ୟେ ଥାଇ
ଶରୀରେ ଆକାଶ ଢାଙ୍କଇ
ଭୂମି ଲୋକଙ୍କୁ ଛାୟା ଦଶେ
ସେ ଯେହ୍ନେ ଆକାଶେ ନ ମିଶେ
ତେସନେ ଆତ୍ମ ଦେହ ଗୁଣେ
ନ ମିଶେ ଏହା ଚିନ୍ତ ମନେ
ମୁଁ ଯେ ଆକାଶ ଗୁରୁ କରି
ଅଚଳା ମଧ୍ୟେ ଦେହ ଧରି
ଆନନ୍ଦେ ଭ୍ରମଇ ସଂସାରେ
ସ୍ମରଣ ନ କରି କାହାରେ
ଏଣୁ ଆକାଶ ଗୁରୁ ମୋର
ଏବେ ହୋ ଶୁଣ ନୃପବର
ଜଳ ଯେସନେ ସୁନିର୍ମଳ
ସ୍ୱଭାବେ ସୁଗନ୍ଧ ସୁମଧୁର

ମଧୁର ସୁବ୍ରତ ବଚନେ
ଶ୍ରବଣ କର ସର୍ବଜନେ
ତୀର୍ଥର ସ୍ଥାଣେ ଭବବନେ
ଭ୍ରମଇ ଜନ ପରିହାଣେ
ତୀର୍ଥ ସ୍ମରଣେ ଲୋକବୃନ୍ଦ
ଯେସନେ ଲଭନ୍ତି ଆନନ୍ଦ
ସ୍ୱାଦ୍ଧାଙ୍କ ଦର୍ଶନ କାରିନେ
ପବନ ହୋନ୍ତି ପ୍ରାଣୀମାନେ
ଏ ଅନୁଭବେ ମୋର ଶିକ୍ଷା
ଲଭନ୍ତି ଶିଖିଲ ଗୁରୁଦୀକ୍ଷା
ତପେ ମୋହର କଳେବର
ଧୂ-ଦାପ୍ତ ତେଜେ ବଳୀୟାର
କେବଳ ପାଦ ମୋ ଉଦର
ଏଣୁ ମୁଁ ଲୋକେ ଭୟଙ୍କର
ତେଣୁ ମୁଁ ଧ୍ୟାନ ଯୋଗବଳେ
ଭୋଜନ କରେ ସର୍ବଠାରେ
ଅଗ୍ନି ଯେସନେ ସର୍ବ ଖାଇ
ବିଗୁରେ ଗୁଣ ଦୋଷ ନାହିଁ
କେବେ ପ୍ରକାଶେ ଅପ୍ରକାଶେ
ଭୋଜନ କରେ ସର୍ବଦାସେ
ଶ୍ରେୟ ଇଚ୍ଛନ୍ତା ଦାତାଙ୍କର
ପାପ ନାଶଇ ପୂର୍ବାପର
ଆପଣା ମାୟାରେ ସର୍ଜନ
ଯେ ସତ ଅସତ ଲକ୍ଷଣ
ତହିଁ ପ୍ରବେଶ ହୋଇ ତାର
ସ୍ୱରୂପ ପ୍ରକାଶେ ଈଶ୍ୱର

ଅଗ୍ନି ଯେମନ୍ତ କାଷ୍ଠ ପାଇ
ତେମନ୍ତ ରୂପ ପ୍ରକାଶଇ
ତେଣୁ ଅଗ୍ନିକୁ ଗୁରୁ କରି
ଭ୍ରମଇ ଲୋକେ ଦେହ ଧରି
ଜନ୍ମ ଯୌବନ ଜରା ମୃତ୍ୟୁ
ଶୁଭ ଅଶୁଭ ଦୁଃଖ ହେତୁ
ଏ ସବୁ ଗୁଣ ବହେ ଦେହ
ଜୀବର ନୁହେ ପରିଗ୍ରହ
ଚନ୍ଦ୍ରର କ୍ଷୟ ବୃଦ୍ଧି ଯେହ୍ନେ
କୃଷ୍ଣ ଶୁକଳ ପକ୍ଷମାନେ
ଲୋକ ଲୋଚନେ ଭ୍ରାନ୍ତ ଦିଶେ
ଅକ୍ଷୟ ଏକ କଳା ଶେଷେ
ଜୀବର ଏମନ୍ତ ବେଭାର
ସ୍ୱଭାବେ ଅଜର ଅମର
ଏ ଅନୁଭବେ ଚନ୍ଦ୍ର ଗୁରୁ
ଭ୍ରମଇ ଗୁରୁ ଶିକ୍ଷା ପାଇ
ଇନ୍ଦ୍ରିୟଗଣ ଏ ଶରୀରେ
ଭ୍ରମନ୍ତ ବିଷୟ ଗୋଚରେ
ଯେଝା ବିଷୟ ଅନୁଧ୍ୟାନେ
ଭୋଗ କରନ୍ତି ନିଜସ୍ଥାନେ
ଆତ୍ମାର ସଙ୍ଗ ନାହିଁ ତେଣେ
ଆଦିତ୍ୟ ଯେସନେ କିରଣେ
ସକଳ ସ୍ଥାନୁଁ ରସ ହରେ
ନିର୍ଲେପ ନିର୍ଦ୍ଦୋଷ ବପୁରେ
କାଳରେ ସମସ୍ତ ତେଜଇ
ସଞ୍ଚିତ ଦାନେ କ୍ଷୋଭ ନାହିଁ ।

ଏ ଜୀବ-ଆତ୍ମା ସର୍ବ ଦେହେ
ଇନ୍ଦ୍ରିୟଗଣେ ବଶ ନୋହେ
ଯେମନ୍ତେ ରବିବିମ୍ବ ନୀରେ
ତେମନ୍ତ ସ୍ଥୂଳବୁଦ୍ଧି ନରେ
ଆତ୍ମାର ଭେଦବୁଦ୍ଧି କରେ
ଉପାଧି ଗୁଣର ବିକାରେ
ଏ ଭବେ ଯେତେ ଜନ ଥାନ୍ତି
ତାହାଙ୍କୁ ବୋଲି ମୂଢ଼ମତି
ଏ ଅନୁମାନେ ମୋ ବିଚାର
ଏଣୁ ମୋ ଗୁରୁ ଦିବାକର
ଅଧିକେ ସଂସାର ସଙ୍ଗତେ
ପୀରତି ନ କରିବ ଚିତ୍ତେ
ଯେବେ କରିବ ସ୍ନେହ ଆଶ
କପୋତ ପ୍ରାୟେ ଯିବ ନାଶ
ଶୁଣ ରାଜନ ସାବଧାନେ
କପୋତ ପକ୍ଷୀ ଘୋରବନେ
କପୋତୀ ସଙ୍ଗେ ସ୍ନେହଭରେ
ଅରଣ୍ୟେ ଗୃହବାସ କରେ
କପୋତ ସଙ୍ଗେ ଭୋଗ ଆଶେ
ଦୃଢ଼େ ଯନ୍ତ୍ରିତ ସ୍ନେହପାଶେ
ନିତ୍ୟେ କରନ୍ତି କ୍ରୀଡ଼ାରଙ୍ଗ
କ୍ଷଣିକେ ନ ଛାଡ଼ନ୍ତି ସଙ୍ଗ
ଦୃଷ୍ଟିକି ଦୃଷ୍ଟି ଅଙ୍ଗେ ଅଙ୍ଗ
ବୁଦ୍ଧିକି ବୁଦ୍ଧି କରି ସଙ୍ଗ
ସ୍ନେହବନ୍ଧନ ସଙ୍ଗମେଳେ
କାଳ ବଞ୍ଚନ୍ତି କୁତୂହଳେ

ସର୍ଗ ବିଚ୍ଛେଦ ଫଳମାନେ
କେବେହେଁ ନ ଦେଖନ୍ତି ନେନେ
ଏକସ୍ଥ ଭୋଜନ ଶୟନେ
ଏକତ୍ରେ ବିହରନ୍ତି ବନେ ।
କପୋତୀ ଛଞ୍ଚେ ଯା ବସୁରେ
କପୋତ ଆଣେ ତତପରେ
ସେବକ ପ୍ରାୟେ ଦିଏ ଆଣି
ଯାହା ମାଗଇ ତା ଘରଣୀ
ଏମନ୍ତେ କେତେ ଦିନ ଗଲା
କପୋତୀ ଗର୍ଭ ଉପୁଜିଲା
କେତେହେଁ ଦିନ ଗର୍ଭେ ଥାଇ
ଜନ୍ମ ହୋଇଲେ ଡିମ୍ବ ଦୁଇ
ପକ୍ଷୀ ପକ୍ଷିଣୀ ପୁଣ ଆଣେ
ଡିମ୍ବ ତାପନ୍ତି ସ୍ନେହବଶେ
ଦିବର ଶବ୍ଦ ଅଗୋଚର
ତାପନ୍ତେ ସେ ଡିମ୍ବ ଭିତର
କେତେହେଁ ଦିନ ଊର୍ଦ୍ଧେ ଗଲା
ଫୁଟି ବାଳକ ଉପୁଜିଲା
ଅତିକୋମଳ ବେନ କାୟେ
ଦେଖି ସାନନ୍ଦ ବାପ ମାୟେ
ସମ୍ଭ୍ରମେ କପୋତ କପୋତୀ
ନିରତେ ବାଳକ ପୋଷନ୍ତି
ପୁତ୍ରଙ୍କ କୋମଳ ବଚନ
ଶୁଣନ୍ତେ ମୁଦ୍ରିତ ଲୋଚନ
ପତଙ୍ଗ ଉଚିତ ଆହାରେ
ପାଳନ୍ତି ଅତି ସ୍ନେହଭରେ

ଏମନ୍ତେ ବେନି ଶିଶୁ ଥାଇ
ପକ୍ଷୀ ସ୍ୱଭାବେ ପ୍ରେମାବଳି
ଉଠନ୍ତେ ବେନି ପୁଚ୍ଛ ଦେହେ
ଦେଖି ସାନନ୍ଦ ବାପମାଏ ।
ପାଳନ୍ତି ଅନ୍ୟୋନ୍ୟ ସ୍ନେହରେ
ବାଳକ କୋମଳ ଆହାରେ
ବହୁରି ମାୟା ମୋହେ ଯନ୍ତି
ପାଳନ୍ତି କପୋତ କପୋତୀ
ଆହାର ଅର୍ଥେ ଏକଦିନେ
ବନେ ପଶିଲେ ବେନି ଜଣେ
ଖୋଜନ୍ତି କୋମଳ ଆହାର
ଏମନ୍ତେ ଶୁଣ ନୃପବର
ପକ୍ଷୀ ବାଳକ ନିଜ ସ୍ଥାନେ
ବ୍ୟାଧ ମିଳିଲା ଘୋରବନେ
ବୃକ୍ଷୁଁ ଉଡ଼ିଣ ବେନି ବାଳେ
ବନେ ଚରନ୍ତି ବୃକ୍ଷତଳେ
ଶବର ଦେଖି ତାହା ବେଗେ
ଜାଲ ପାତିଲା ବୃକ୍ଷ ଦଗେ
ଉପରେ ବାନ୍ଧିଲା ଦଉଡ଼ି
ପକ୍ଷୀଙ୍କୁ ଅଣିଲା ଗଉଡ଼ି
ଆହାର ଦେଇ ଜାଲ ତଳେ
ଅନ୍ତରେ ବସିଲା ନିଷ୍ଟଳେ
ପକ୍ଷୀବାଳକ ଭକ୍ଷ୍ୟ ପାଇ
ଜାଲେ ପଡ଼ିଲେ ବେଗେ ଯାଇ
ଆହାର ଦେଖିଲେ ନୟନେ
ପଡ଼ିଲେ ଲୁବ୍ଧକ ବନ୍ଧନେ ॥

ତକ୍ଷଣେ କପୋତ କପୋତୀ
ଆସି ମିଳିଲେ ବୃକ୍ଷ କତି
ତୁଣ୍ଡେ ଆହାର କୁଣ୍ଡେ ଧରି
ବୃକ୍ଷେ ଲୋଡ଼ନ୍ତି ଅନ୍ୱେସରି
ନ ଦେଖି ଗୃହଁ ଦଶ ଦିଗେ
ପୁଣି ଦେଖିଲେ ଭୂମିଭାଗେ
ଦେଖେ ବନ୍ଧନ ଜାଲେ ଦ୍ୱନ୍ଦ୍ୱେ
ବେନି ବାଳକ ଧଡ଼ପନ୍ଦେ
ଝଡ଼ନ୍ତି ପ୍ରାଣର ବଳଲେ
ନାଦ କରନ୍ତି କୋଳାହଳେ
ଦେଖି କପୋତୀ ଦୁଃଖ ଛନ୍ଦେ
ଭୂମିରେ ପଡ଼ି ମୋହଗତେ
ବାଳକ ଦେଖି ଜାଲତଳେ
ଜାଣଇ ଜୀବନ ବିକଳେ
ବାଳକ ସ୍ନେହଭର ଆଶେ
ଡେଇଁ ପଡ଼ିଲା ଜାଲପାଶେ
ପୁତ୍ରଙ୍କ ମୁଖେ ମୁଖ ଦେଇ
ଦେଖି କପୋତ ବିସୂରଇ
ପ୍ରାଣୁଁ ଅଧିକ ମୋର ସୁତେ
ପଡ଼ିଲେ ଶବର ଆୟତେ
ପତ୍ନୀ ପଡ଼ିଲା ଜାଲ ମଧ୍ୟେ
ପ୍ରାଣ ଧରିବି କେଉଁ ସଧେ
ପତ୍ନୀ ମୋହର ପ୍ରାଣସଖା
ସେ ମୋତେ କରିଗଲା ଏକା
ତାହାର ଗୁଣ ଅଛି ଯେତେ
ଛନ୍ଦେ ମୁଁ ଧରିବି କେମନ୍ତେ

ସେ ମୋର ଜୀବନ ଯୁବତୀ
ତା ବିନୁ କେବା ମୋର ଗତି ।
ବିଧି ହୋଇଲା ବାମ ମୋର
ଆପଦେ ବୁଡ଼ିଲା ମୋ ଘର
ଏ ଘୋର ବନେ ଗୃହୀପଣେ
ମୋ ଜନ୍ମ ଗଲା ଅକାରଣେ
ଗୃହ ଆଶ୍ରମେ ମୋ ପୀରତି
କାମେ ମୋ ନ ପୂରିଲା ମତି
ବିଧାତା ମୋତେ ବାମ ହୋଏ
ବନ୍ଧନେ ପଡ଼ିଲେ ମୋ ପୋଏ
ଏ ପତିବ୍ରତା ଶିରୋମଣି
ଯେ ମୋର ପ୍ରାଣର ଘରଣୀ
ଆହାର ଆଣି ଯେତେବେଳେ
ମୁହିଁ ଭୁଞ୍ଜଇ ବୃକ୍ଷତଳେ
ତେବେ ସେ ଭୁଞ୍ଜେ ମୋ ଘରଣୀ
ମୋ ବିନୁ ନ ଭକ୍ଷଇ ପାଣି
ସେ ମୋତେ ଥୋଇ ଶୂନ୍ୟ ଗୃହେ
ସ୍ୱର୍ଗେ ଚଳିଲା ସୁତ ସ୍ନେହେ
ସକଳ ସୁଖ ମୋର ଗଲା
ସୁତସଙ୍ଗତେ ପତ୍ନୀ ମଲା
ଏତେ କଷଣ ଗୃହେ ସହି
ମୋ ପ୍ରାଣ ଥିବା ନ ଯୋଗାଇ
ଏବେ ମୁଁ ଏକା ଗୃହେ ଥାଇ
କେମନ୍ତେ ସମ୍ଭାଳିବି ଦେହି
ଏମନ୍ତେ କରଇ ରୋଦନ
କ୍ଷଣ କ୍ଷଣକେ ଅଚେତନ

ପଡ଼ଇ ପୁଣ ପୁଣ ତଳେ
ପୁଣି ବସଇ ବୃକ୍ଷଡାଳେ
ଏମନ୍ତ ବୋଲଇ ବିଳାପେ
କାନ୍ଦଇ ପାଇ ମନସ୍ତାପେ
ଜୀବନ ନ ପାଇଲୁ ଧରି
ଜାଲେ ପଡ଼ିଲୁ ହା ହା କରି
କପୋତୀ କପୋତ ବାଳଙ୍କ
ଘେନିଣ ଚଳିଲା ଲୁବ୍ଧକ
ପିଞ୍ଜରେ ଥୋଇଲା ଯତନେ
ମିଳିଲା ଯାଇ ନିଜ ସ୍ଥାନେ
ଏମନ୍ତେ ଗଲା ନିଜପୁରେ
ଶୁଣ ସଜ୍ଜନ ମନ ସ୍ଥିରେ ।
ଏ ରୂପେ ସ୍ନେହ ଅବଲମ୍ବି
ସଂସାରେ ବନ୍ଧନ କୁଟୁମ୍ବୀ
ଦୁଃଖ ସହଇ ଏ ଶରୀରେ
ନିତ୍ୟେ କୁଟୁମ୍ବ ପୋଷିବାରେ
କରନ୍ତେ ଆକୁଳ ହୃଦନ୍ତୁ
ଏଣୁ ବୋଲଇ ଦୁଃଖମନ୍ତୁ
କପୋତ ପ୍ରାୟେ ଏ ସଂସାରେ
ମଜ୍ଜଇ ଘୋର ଅନ୍ଧକାରେ
ତୁ ଏବେ ବୁଝି ମୋ ବଚନ
ହେ ରାଜା ସ୍ଥିର କର ମନ
ଦେଖ ମନୁଷ୍ୟ କଳେବର
କେବଳ ମୁକତିର ଦ୍ୱାର
ଏ ଦେହ ପାଇ ମହୀତଳେ
ହେଲେ ତରନ୍ତି ଭବଜଳେ

ଦୁର୍ଲ୍ଲଭ ପାଇ ଏ ଶରୀର
ଛୁଟିମ୍ବେ ଦୃଢ଼ମତ ସାର
ଜନ ବାଞ୍ଛଇ ଦୁଃଖ ସୁଖେ
ଅନ୍ତେ ପଡ଼ଇ ଭ୍ରମ ପାକେ
ଏ ରୂପେ ବୁଡ଼ିଲ ସଂସାର
ଏଣୁ ଜପୋତ ଗୁରୁ ମୋର ।
ଏବେ ତୁ ଶୁଣ ଏକଚିତ୍ତେ
ଭବେ କହିଲି ମୁହିଁ ତୋତେ
ଏ ଭବେ ତୁଟଇ ସଂସାର
ବୋଲଇ ନିଗମ ବିସ୍ତର
ଏହା ସଂସାର ଲକ୍ଷଣତେ
ଶ୍ରୀଏକାଦଶ ଭାଗବତେ
କହଇ ଦାସ ଜଗନ୍ନାଥ
କୃଷ୍ଣଚରଣେ ଦେଇ ଚିତ୍ତ ।

---

# ଉଷାଭିଳାଷ

## ପଞ୍ଚମ ଛାନ୍ଦ

### ଦଶ—ଅହ୍ଲାଏ

### (୰ଶିଶୁ ଶଙ୍କର କୃତ)

ପଲଙ୍କ ତେଜିଣ ଉଠିଲୁ ସୁମୁଖୀ ସପନ ସଙ୍କେତ ପାଇଣ,
ଅହ୍ଲା । ପ୍ରାଣନାଥ, କେଣେ ଗଲୁ ବୋଲି ଉଚ୍ଚସ୍ୱରେ କରେ କାରୁଣ,
ଦାଇବା । ଦେଖାଇ ନିଧି ହରିନେଲୁ;
ଶିଶୁକୁମାରୀ ମୁଁ କିଛି ନ ଜାଣଇ କିମ୍ପାଇ ମୋତେ ଏହା କଲୁ ? । ୧ ।

ସପନେ ଅଙ୍ଗ ସଙ୍ଗ ଲଭି ଅଙ୍ଗନା ବରହେ ବାଉଳ ବଚନ,
ରତି ଲାଲସେ ଅଳସଭର ତନୁ ତରଳ ଚକିତ ଲୋଚନ,
ହେ ନାଥ ! ଏହିକ୍ଷଣି ଥିଲ ପଲଙ୍କେ,
ବିନା ଅପରାଧେ କିକେ ଛାଡ଼ି ଗଲ କାମିନୀ-ମରଣ ଶଙ୍କେ । ୨ ।

ଛନ ଛନ ମନ ବାଉଳ ବଚନ ନରେଖି ଗୃହେଁ ଦଶ ଦିଶ,
ଦଣ୍ଡେକେ ଲେଉଟି ଲାଜ ବିକାଶିଲୁ ହେଟ-ବଦନେ ଘରଶ୍ୱାସ
ତାହାକୁ, ଉଠି ପଚାରେ ଚିତ୍ରଲେଖୀ,
କିସ ବିପରୀତ କହ ଗୋ ! କୁହିତ ଦେବଣ ଚନ୍ଦ ପ୍ରାଣସଖି । ୩ ।

ଅବୋଧ ବାଳା ତୁ, ନାହିଁ ବିଭା ହେଉ, ଦଇବ ଗୁଣେ କିକେ ଦୁଖୀ,
ମଧୁପାନ ଆଶେ ଚମ୍ପକ ବିତାଣେ କାଉଁ ମଧୁପ ମିଳେ ସଖି ।
(ଅହେ) ସଙ୍ଘାତ, ସ୍ୱରୂପ କହ ମୋରେ ବାଣୀ;
ରବି ପବନ ଅଗମ୍ୟ ଅନ୍ତପୁରେ କାହୁଁ ପୁରୁଷ ଦଲୁ ଆଣି । ୪ ।

ସଖୀ ବାଣୀ ଶୁଣି ନିଦ୍ରା ଭାବ ଗୁଣି ସୁଲଟେ କୁଚ ଗଣ୍ଡ ଜାନୁ,
ନବ ଅନୁଭବେ କାତର ଅଧର ଆଶ୍ୱସି ଝମ ଝମ ତନୁ !
ଚତୁରୀ, (ତାର) ଚମକି ଉଠେ ଅଙ୍ଗ ଭଙ୍ଗ;'
ଅତି ଅଣକତେ ଭୂମିରେ ଶୁତଲୁ, ଶିହ୍ଲୁ କେଶବାସ ଅଙ୍ଗ । ୫ ।

ମୂର୍ଚ୍ଛା ଭାଙ୍ଗି ଧୀରେ ଧୀରେ ଚାହିଁ ଚିତ୍ରଲେଖା ମୁଖ ସରସ,
ବାଳୁ · ଦଇବ ଦେବଣ ବିପରୀତ ବରଷା ହେଲା ମଧୁମାସ ।
(ଆଗୋ) ସଙ୍ଗାତ ! ମୋହ-ମେଘ ଘୋଟେ ରୁନ୍ଧିଲା,
ଲୋଚନନୀର, ଚୂତଭେ ନିରନ୍ତେ କୋକିଳ ବଚନ ବାନ୍ଧିଲା । ୬ ।
ମଳିନ ଅଧର ଜମ୍ବୁର ଆକାର କମ୍ପିତ-ଚୂତ-କେକୀ ନୃତ୍ୟ,
ଶୋକ-ସାଗରେ ମନ-ନଦୀ ମିଶିଲା, ଚେତନା ଚଞ୍ଚଳ ତଡ଼ିତ,
(ଆଗୋ) ସଙ୍ଗାତ ! କହ ମଧୁର ମୃଦୁ ରସ ।
ସଚେତ ହୋଇ ଶରଦ-ଚନ୍ଦ୍ରାନନା ଲାଜ-ସଂକୋଚେ ହସ ହସ । ୭ ।
କହ ମନ କଲେ ଲାଜ ନିବାରଇ ଉତ୍ସୁକ କରେ ମନୋରଥ,
ଛାଡ଼ି ବାହ୍ୟ ଭ୍ରଷ୍ଟ ବଚନ ଭୁଲଇ ସପନେ ମନ ତଦଗତ,
(ଆଗୋ) ସଙ୍ଗାତ ! ନବ-ଜଳଦକାନ୍ତ ଶ୍ୟାମ;
ସ୍ୱପନେ ମୋତେ ବିଡ଼ମ୍ବନ କଲା ସେ ରୂପେ ନ ଗଣେ କୋଟିକାମ । ୮ ।
କହୁ କହୁ ତାର ତରଳ ଲୋଚନୁଁ ବହେ କଜ୍ଜଳ ଜଳଧାର,
ଚିତ୍ରଲେଖା ବୋଲେ ଚିତ୍ତ ସ୍ଥିର କଲେ ଲଭିବ ଚିତ୍ରପଟ ସାର,
(ଆଗୋ) ସଙ୍ଗାତ ! ଆଣିବ ତାକୁ ଚିହ୍ନାଇଲେ;
ଚରଣେ ପଡ଼ି ଚତୁରୀ ବୋଲେ ଲଭି ଜୀଇବ ସେ ଚିତ୍ର ଗୃହିଁଲେ । ୯ ।



# ରହସ୍ୟ ମଞ୍ଜରୀ

(ଦେବଦୁର୍ଲ୍ଲଭ ଦାସ)

## ଛଅ ଋତୁ ବର୍ଣ୍ଣନା

ରାଗ—କରୁଣା ଭାଟିଆରୀ ।

ଏ ମହା ଗ୍ରୀଷମ ଋତୁ ବୈଶାଖର ଶେଷ,
ବହଇ ଝଞ୍ଜାପବନ କୃଶାନୁ ବତାଶ ।
ପାଚିଲେ ଆମ୍ବ ପଣସ ତାତିଲେ ସଲିଳ,
ଜଳଇ ଶରୀର ମୋ ଟଳଇ କଳେବର । ଘୋଷା ।
ମୁଁ ଗୋ ମଲି ମଲି,
କାନ୍ତ ମୋ ଉପେକ୍ଷି ଗଲେ କଉଁ ଦୋଷ କଲି ।

ଗମ୍ଭୀର ଘରରେ ଗୋ ଗ୍ରୀଷ୍ମେ ନୋହେ·ଶୋଇ,
ଦକ୍ଷିଣ ମେଲ୍ଲି ମନ୍ଦିରେ ପ୍ରଭୁ ସଙ୍ଗେ ରହି ।
କର୍ପୂର ଚନ୍ଦନ ସୁଶୀତଳ ଜଳେ ଗୋଳି,
ସ୍ୱାମୀ ସଙ୍ଗେ ବିବିଧ ବିନୋଦେ ବୋଳାବୋଳି ।୧।

ଫୁଟି ତାଳସଜ ପଣା ପଇଡ କଦଳୀ,
କର୍ପୂର ମରିଚ ଖଣ୍ଡ ସିଙ୍ଗଡ଼ା ତାମ୍ବୁଳ ।
ମଣୋହ୍ର ବରଣ ସେନ୍ଦୁ ଖୁଆଇଣ ଖାଇ,
ସୁସ୍ଥ ପାଇ ସ୍ୱାମୀ ଭୁଜପଞ୍ଜରେଣ ଶୋଇ ।୨।

ଋଷଭ ସମ୍ପୂର୍ଣ୍ଣେ ସଖି ଆଷାଢ଼ର ଅନ୍ତେ,
ଶ୍ରାବଣ ପ୍ରବେଶ ଗୋ·ଜଳଦ ଋତୁ ହୋନ୍ତେ
ଗାଜିଲେ ଗଗନେ ମେଘ ସାଜିଲେ ବରଷା,
କି ଜାଣି ନବଡ ଘୋର·ଅନ୍ଧକାର ନିଶା ।୩।

ଘଡ଼ଘଡ଼ି ଉପରେ ପଡ଼ଇ ଚଡ଼ଚଡ଼ି,
ଚଡ଼ଚଡ଼ି ଉପରେ ନର୍ଘାତ ପଡ଼େ ମାଡ଼ି;
ବିଜୁଳି ଝଲକେ ଗୋ ଚମକି ଉଠେ ହିୟା,
କେସନେ ବଞ୍ଚିବ ମୋର କୋଳେ ନାହିଁ ନାହା ।

କମଳିନୀ ବିଘଂସିଲେ, ଅବନୀ ଉଲ୍ଲସି,
ମାଳିଲେ ମଣ୍ଡୂକେ ଯେ ଡାହୁକ ଡାକେ ଘସି,
ନଈ ଯୋଡ଼ ବଢ଼ିଲେ, ଜଡ଼ିଲେ ସୁନାଗରୀ,
ସୁବେଶ ଯୁବତୀ କାନ୍ତ ପଥ ଅନୁସରି । ୬ ।

ପ୍ରବାସୀ ପୁରୁଷମାନେ ସର୍ବ କାର୍ଯ୍ୟ ଛାଡ଼ି,
ଘରକୁ ଆଇଲେ ପ୍ରିୟା ଗୁଣ ମନେ ପଡ଼ି ।
ଏକ ମାତ୍ର ମୋର କାନ୍ତ ନଇଲେ ମୋ ପାଶ,
ନଚଯ଼େ ଜାଣିଲି ମୋର ତେଜିଲେ ମୁହାଁସ । ୭ ।

ଭାଦ୍ରବର ଅନ୍ତେ ସଖି ଅଶ୍ୱିଣ ପଶନ୍ତେ,
ପ୍ରବେଶ ଶରଦ ଋତୁ ପ୍ରତେଜ ଆଦିତ୍ୟେ,
ଗଗନୁ ଝଡ଼ିଲା ହିମ ମହୀ ଫଣୀ ପଶେ,
ବରଷା ବଞ୍ଚାଇ ମେଘ ନାନା ବର୍ଣ୍ଣ ଦିଶେ । ୮ ।

ଉତ୍ତରୁ ଅଇଲା ଶୀତ ବିକାନ୍ତ କୁମାରୀ,
କାନ୍ତ ଥିଲା କାମିନୀଙ୍କି ଦୁହୁଁ ଅପସରି,
ଫୁଟିଲେ କୈରବ କାଆ ଚନ୍ଦ୍ରକାନ୍ତ ବଢ଼େ,
ଶ୍ରୋଣେହା ରତି ଆରତେ ଶ୍ରୋଣେହାଙ୍କ ଲେଢ଼େ । ୯ ।

କାର୍ତ୍ତିକ ସରନ୍ତେ ସଖି ମଗୁଶିର ଆସେ,
ନାକର ପଡ଼ିଲା ହିମ ଋତୁ ପରକାଶେ,
ଦହିଲା କମଳବନ ବହିଲା ଉତ୍ତରା,
ସୁ ଥିର ହୋଇଲା ସିନ୍ଧୁ ସଧୀର ଲହରୀ । ୧୦ ।

ମରୁଆ ହସିଲ୍ଲ, କୁନ୍ଦ ଦେଖିଣ ବଳାଣ,
ଗାଇଲେ ଗାଆନ୍ତା ଗୀତ ସୁଣ୍ଠନେଇ ରସ,
ଛୁଟିଗଲେ ନଦୀ ସଙ୍ଗ, ଫିଟିଗଲେ ବାଟ,
ବନ ଅଛି ପାଖେ ଗଲ କାନ୍ତ ନାହିଁ ଭେଟ । ୧୧ ।

ଶିଙ୍ଗଡ଼ା କେସର ସଖି ଗୁଆଘୃତେ ପୋଇ,
କର୍ପୂର ମରିଚ ମେଳ ମିଠ ଦୁଧେ ମୋହ୍ନ,
ଷାଠିଆ ଖଣ୍ଡ ମିଶାଇ ବଟା ଭରି ଥୋଇଁ,
ଶୟନ ପଲଙ୍କେ କାନ୍ତ ଅଧରେ ଯୋଗାଇ । ୧୨ ।

ପୁଷର ଅନ୍ତରେ ସଖି ମକର ପ୍ରଖ୍ୟାତ,
ପ୍ରବେଶ ଶିଶିର ଋତୁ ପବନ୍ତ ଜଗତ,
ମକର ସ୍ନାହାନ କରନେ ଧର୍ମ ଅର୍ଥେ କରି,
କୁହୁଡ଼ି ପଡ଼ିଲ ଗୋ ଜାଡ଼ିଲ ବସୁନ୍ଧରୀ । ୧୩ ।

ଫୁଟିଲ ମାଧବୀ ଗୋ ଛୁଟିଲ କଇଁ ଫୁଲ,
ଉଠିଲ ଦକ୍ଷିଣ କଣ୍ଠ ଦାମ-ଟାର ତୁଲ,
ଲେଉଟିଲ ଉତ୍ତର ପବନ ନିଜସ୍ଥାନ
ଉଠିଲ ଲହରୀ ସିନ୍ଧୁ ଅନନ୍ତର ଫେନ । ୧୪ ।

କାକଗର୍ଭ ଦେଖି ସଖି ହୋଇଲ ଚକିତ,
ଏତେବେଳେ ନ ଭେଟିଲ ଗଉରୀବାରତ,
କୁତୁକେଲ ଚଉଁରଳେ ଅତି ଉଗ୍ରଗନ୍ଧ,
ଚୂତର ବକୁଳ ଦେଖି କୋକିଳ ଆନନ୍ଦ । ୧୫ ।

ମଜର ସରନ୍ତେ ସଖି ଫଗୁଣର ଅନ୍ତେ,
ଅଇଲ ବସନ୍ତ ଋତୁ ଅ. ଙ୍ଗ ସଙ୍ଗତେ,
ବହିଲକ ମଳୟ ପବନ ଗନ୍ଧଭୁଲେ,
ପଲ୍ଲବିଲେ ତରୁଲତା, ଫୁଟିଗଲେ ଫୁଲେ । ୧୬ ।

ଗୃଚେତ୍ରୀ ଗହଳ ସଖୀ ଗୋବିନ୍ଦଙ୍କ ଦୋଳ,
ସଙ୍ଗସୁଖ ଘେନି ଚଳେ ମଦନ-ଗୋପାଳ,
କହୁଁ କହୁଁ ଚୂତ ବୃକ୍ଷେ ଧଇଗଲେ ଭସି,
କୋକିଳ କ୍ରୀଡ଼ଇ ଚୂତ ଡାଳେ ଡାଳେ ବସି । ୧୭ ।

ଚଇତ ମାସରେ ରାଧାମାଧବ ସୁନ୍ଦର,
ବୃନ୍ଦାବନେ ପଶିଣ ଲୋଡ଼ଇ ଅନୁସର,
ଦେଖଇ ପଲ୍ଲବ ଲତା ତରୁ ଫଳ ଫୁଲେ,
ଦେବ କହେ ସଖୀ କର ଧରି ଧରି ବୁଲେ । ୧୮ ।

ଇତିଶ୍ରୀ ରହସ୍ୟ ମଞ୍ଜରୀ ଦ୍ୱାଦଶ ଛନ୍ଦେ,
ଦ୍ୱାଦଶ ମାସାନ୍ଧ ଷଡ଼ରତୁ ବନ୍ଧେ,
ତ୍ରୟୋଦଶ ଛନ୍ଦ ବର୍ଣ୍ଣନେ କେବଣ ବୋଧ
କହିବାକୁ ଆଜ୍ଞା ହେଉ (ପ୍ରଭୁ) ଏଥିର ପ୍ରବୋଧ । ୧୯ ।

—o—

# ପ୍ରାର୍ଥନା

## (ସାଲବେଗ)

ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ
ମୋର ଆରତ ନଳିନୀ—ବନକୁ କର ଦଳନ ॥

ଗଜରାଜ ଚିନ୍ତା କଲା ଥାଇଁ ଘୋର ଜଳେଣ ।
ଚକ୍ର ପେଷି ଗ୍ରାହ ନାଶି ଉଦ୍ଧରିଲ ଆପଣ ॥

ଘୋର ବନେ ମୃଗୁଣୀକି ପଡ଼ିଥିଲା କଷଣ ।
କେତେ ବଡ଼ ବିପତ୍ତିରୁ କରିଅଛ ତାରଣ ॥

କୁରୁସଭା ତଳେ ଶୁଣି ଦ୍ରୌପଦୀର ଜଣାଣ ।
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜା କଲ ବାରଣ ॥

ରାବଣର ଭାଇ ବିଭୀଷଣ ଗଲା ଶରଣ ।
ଶରଣ ସମ୍ଭାଳି ତାକୁ ଲଙ୍କେ କଲ ରାଜନ ॥

ପ୍ରହ୍ଲାଦ ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ ।
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ॥

କହେ ସାଲବେଗ ହୀନ ଜାତିରେ ମୁଁ ଯବନ ।
ଶ୍ରୀରଙ୍ଗା ଚରଣ ତଳେ କରୁଅଛି ଜଣାଣ ॥

— — — —

# ମନ୍ଦାକିନୀ ଚଉତିଶା

(ବିପ୍ର ବିଷ୍ଣୁଦାସ)

ରାଗ—କାମୋଦୀ

କୃପାଲୋଳ-ଲୋଚନା କଳକଣ୍ଠବଚନ
କନକ-ପ୍ରତିମା-ବରନା,
କୁନ୍ଦସୁନ୍ଦରଦନ୍ତୀ କମନୀୟ-ମୂରତି
କନକ-କମଳ-ବଦନା ରେ
ମନ୍ଦାକିନି !
କେତେକ ମୋହୋ ଥାଇଁ ଯିବୁ
କୋମଳେ ପ୍ରେମନ୍ତେ କହିବୁ
କରୀକ୍ରୀଡ଼ାଗମନ ! କୃପା କରିବୁ ଯେବେ
ରସିକ ଯୁବା ଜୀଆଇବୁ ରେ
ମନ୍ଦାକିନି ! ୧ ।

ଖଞ୍ଜନନୟନା ସେ କୋମଳା ସୁଦୟା କି
ସେବକ ମୋହୋ ଉପଗତ
ଖଣ୍ଡେନ୍ଦୁଶେଖରହିଁ କରିବେ ସେ ଦୟାକୁ
ମଙ୍ଗଳ ହୋଇବ ଜୀବିତ ରେ
ମନ୍ଦାକିନି !
ଖର-ଅପାଙ୍ଗ-ଚନ୍ଦ୍ରମୁହିଁ
ଖେଳନ୍ତା ନେତ୍ରାନ୍ତେ ଅନାଇଁ
ଖଣ୍ଡା ମଦନ ହାଥେ ଶାଣ ଧରି ମୁଁ ହେଲି
ଆପଣା ଶିର ଛେଦ ପାଇଁ ରେ
ମନ୍ଦାକିନି ! ୨ ।

ଗାଢ଼କୁନ୍ଦଦନ୍ତୀ ଯେଣୁ    ମୋହବାର ଅନୁନୟ
ଶୁଣିଲେ ବଞ୍ଚିବ ମଦନ
ଗୂଢ଼ କୁନ୍ଦଦନ୍ତ ହେଲେ    ଭିତରେ ସୁସରସ
କୁମୁଦ-ନାଳିକା ଯେସନ ରେ
ମନ୍ଦାକିନି !
ଗର୍ବ ମନରେ ନ କରିବୁ
ଗୁପତ ସମୟ ଠାକବୁ
ଗନ୍ଧର୍ବସତ୍ତ୍ୱା ମନ    ଯେମନ୍ତେ ମୋହୋଠାରେ
ବଳଇ ତେମନ୍ତ କରିବୁ ରେ
ମନ୍ଦାକିନି ! ୩ ।

ଘନ-ଜଘନା ନିକଟେ    ଘେନିବ ମୋ ବେଦନା
ଘେନାଇ କହିବୁ ଯେମନ୍ତେ
ଘଟଣ ତୋ ଦଦନ    ଦରଶନ ବିହୁନେ
ମଦନ ହୋଇଲେ କୃତାନ୍ତ ରେ
ମନ୍ଦାକିନି !
ଘେନିବ ଜୀବନ ତାହାର
ଘନସ୍ତନି ! ତୁ ପ୍ରତିକାର
ଘେନିବୁ ଯେବେ ଯେ    ବିନୟ ଶ୍ରବଣ-ପଥେ
ଜୀବନ ହୋଇବ ତୋହୋର ରେ
ମନ୍ଦାକିନି ! ୪ ।

ନଳିନ ଇନ୍ଦୀବର    ନୀଳକଣ୍ଠ ଚକୋର
ମଧୁର ମୀନ କାମଶର
ନୟନ ତୁଳନାକୁ    କହିଁ ଘୁଷେ ଯେ ସମ
ଚଞ୍ଚଳାମୃତଲୋଚନାର ରେ
ମନ୍ଦାକିନି !

ନାଗସ୍ୱରହ ମୋ'ତେ ଗୃହଁ
ନେସ ମନ୍ତୁରେ ଭଲଠାଇ
ନ ଗୃହଁଲ୍ଲ ପଦ୍ମେ      ଭଦ୍ର ସେ ଗୃହଁ ଗଲ୍ଲ
ନୟନକୁ ତା ଯାଉ ନାହିଁ ରେ
ମନ୍ଦାକିନୀ ! ୫ ।

ଚତୁର ପଣ ତାର      ଲକ୍ଷିବାକୁ ଗୋଚର
ନୋହୁଇ ସମସ୍ତ ପ୍ରକାରେ
ଚଳିବା ବିନା ଯଥା      ମହ୍ନା ଗୁପତ ହୋଇ
ଅନିଳ ଥାଇ ବ୍ୟଜନରେ ରେ
ମନ୍ଦାକିନୀ !
ଚମତ୍କାର ଏହି ତାର
ଚଞ୍ଚଳାପ୍ତୃତ-ନୟନାର
ଗୃହିଁବା ମାତ୍ରେ ଅନା-      ୟାସରେ ହେଉ ଯାଇ
ଅସୀବନ୍ଧାର ସୀଉକାରରେ
ମନ୍ଦାକିନୀ ! ୬ ।

ଛୁଆ କାନ୍ଥ ପିହ୍ନାଣୀ      ଛଇଳରେ ଗୃହାଣୀ
ଶୁଣିଲେ ବିନୟ ମୋହୋର
ଛଡ଼ି ସମସ୍ତ ଶ୍ଳେଷ      ମନୋଗତ ବିଳାସ
ଉତ୍ସାହ ବଢ଼ିବ ତାହାର ରେ
ମନ୍ଦାକିନୀ !
ଛୀନୋଦରୀ ମନ ନ ପାଇ
ଛଡ଼ି ପଡ଼ିବ ତୁମ୍ଭେ ନାହିଁ
ଛିତମଣ୍ଡନା ଯେବେ      ମନେ ଆନ ଯୋଜିବ
ଏମନ୍ତ କହିବୁ ବୁଝାଇ ରେ
ମନ୍ଦାକିନୀ ! ୭ ।

ଯଥା ସିନ୍ଦୂର ରଜ ମସ୍ତକରେ ମଣ୍ଡନ
ଚନ୍ଦନ ସର୍ବାଙ୍ଗ ମଣ୍ଡନ
ଜାଣିଲେ ହେଁ ଏମନ୍ତ ସମସ୍ତ ଲୋକଙ୍କର
ଚନ୍ଦନଠାରେ ବହୁ ମାନ ରେ
ମନ୍ଦାକିନୀ !
ଯେବେ କହିବ ବାଳା ଲୋପ
ଜାଣି ମୁ ସେ ସ୍ନେହ କଳାପ
ଯେମନ୍ତେ ନାନା କାଷ୍ଠ- ଧୂମ ଧୂମରେ ଲେଖା
ଯଥା ଅଗୁରୁ ଧୂମ ଧୂପ ରେ
ମନ୍ଦାକିନୀ ! ୮ ।

ଖଳଦଶନା ପ୍ରିୟା ସହଚରୀମାନଙ୍କୁ
ଗୃହେଁ କହିବ ଅନକ୍ଷରେ
ଖଳ କଳ୍ପିତ ଭାବ ଗର୍ବ ବିକ୍ରମ ଲବ
ଛୁଇଁଥିବ ସେ ବଚନରେ ରେ
ମନ୍ଦାକିନୀ !
ଝଗଡ଼େ କହିବୁ ତୁ ଠାବ
ଝିଠକହାସୀ ଗୂଢ଼ ଭାବ
ଝିସନମ୍ନୁନା ଲୋହ ପ୍ରସନ୍ନ ଅପ୍ରସନ୍ନ
ନୟନଭାବ ସୂଚୋଇବ ରେ
ମନ୍ଦାକିନୀ ! ୯ ।

ନୃପବଲ୍ଲଭା ବୋଲି ଭରସା ହୋଇ ନାହିଁ
ନୃପ-ରକ୍ଷକରେ ମଣ୍ଡନା
ନଳିନ ନାଳୀ କଣ୍ଟ- କରେ ବେଷ୍ଟିତ ହେଲେ
ମଧୁପ ଉଦ୍‌ଗତମନା ରେ
ମନ୍ଦାକିନୀ !

. ନିସର୍ଗ ଚଞ୍ଚଳନେତ୍ରାରୁ
ନିର୍ମଳ କେତକୀ-ଗାତ୍ରାରୁ
ନ କରିବୁ ଅଶଙ୍କା ଏହି କଥା ବିଗୃହ
ସୁରତ ପ୍ରଗୃହ ପାତ୍ରାରୁ ରେ
ମନ୍ଦାକିନୀ ! ୧୦ !

---

# ଲୀଳାବତୀ

(ରଘୁନାଥ ହରିଚନ୍ଦନ)

## ବନ୍ୟାବର୍ତ୍ତସ୍ୱର୍ଣ୍ଣ—୧୯ ଛାନ୍ଦ

( କଲ୍ୟାଣ ଅହାରୀ ସ୍ୱଗେଣ୍ଟ ଗୀୟୃତେ—ସାରମାନ୍ ପରତାଳେନ । )
( ବୈଖରୀ ବାଣୀରେ ଗାଇବ )

ନୃପସତ୍ତମ-କୁମାରୀ ରସାଂଶ-ଚନ୍ଦ୍ର-ଗଉରୀ
ଘନସ୍ତନୀ କୃଶୋଦରୀ ଗୁଣଗଉରୀ
ପୀନସ୍ତନଭର-ଭରୀ ବଳହ୍ୱାନା ସୁକୁମାରୀ
ଅବନୀ-ମଣ୍ଡଳ-ଶିରୀ ଲତା-ମଞ୍ଜରୀ
ମାତାଙ୍କ ନିକଟରୁ ଆସି
ପଲଙ୍କ ଉପରେ ବସି ବଞ୍ଚଇ ନିଶି ।୧।

ମନ ତାର ତୃଣ ବନ ଦହଇ କାମ-ଦହନ
କ୍ଷଣେ କ୍ଷଣେ ଶୂନ୍ୟେକ୍ଷଣ ହୋଇ ସୁକେଶୀ
କୁମାର ଚନ୍ଦ୍ରବଦନ ଧ୍ୟାନେ ତତପର ମନ
ନିଶ୍ଚଳ ହେଳ ଲୋଚନ ଖର ନିଶ୍ୱାସୀ
ଦମ ଦମ ହୋଏ ହୃଦୟ
ଅଧର ଶୁଖଇ ଥର ହୁଅଇ କାୟ ।୨।

ମନ ତା କ୍ଷୀର ସାଗର କୁମାର ପୀୟୁଷ-କର
ଦରଶନେ ସ୍ନେହତର କଲ୍ଲୋଳ ଜାତ
ଏ ସମୟେ ଜନନୀର ଅନୁଜ୍ଞ ଦବସ-କର
ଉଦୟ ହୋଇ ଅନ୍ତର କଲା କୁହତ
ଏଣୁ ଶଶିବଦନୀ ମନ
ସୁଖହିଁ ନ ପାଇ ଦୁଖେ ହୋଏ ମଗନ ।୩।

ପୁଣି ଏତେ ବଗିଚାରେ ପଥରେ ଜଙ୍ଗମ ଲକ୍ଷ୍ମୀ
ଅଣିଥିଲା ଭୂପ ଏହି ଯୁବା ହୋଇବ
ଚିରକାଳ ଯା'ଏ ଗୃହେଁ ମୁଦ୍ରାନ୍ତ ଲୋଚନ ଦୁଇ
ଏତେକ ମାତ୍ର ନ ସହି ନେଲା ଦଇବ
ଶୁଣିଛି ସେ ନୃପନନ୍ଦନ
କେମନ୍ତେ ଅନେକ ଦୂର କଲେ ଗମନ । ୪ ।

ଏ ଦରଶନ ନୋହିବ ଇନ୍ଦ୍ରଜାଲହିଁ ହୋଇବ
ଦେଖିଲା ମାତ୍ରେ ହରିବ ଆନ କେ ଅବା
କେବଳ ଯେ ଥିଲେ ଦେବୀ ଏ ତ ନୁହନ୍ତି ମାନୁଷୀ
ଅନୁମାନ ଅବା ଏଥି କେତେ କରିବ
ପଥ ପୁରୁଷ ବା ନୋହିବ
ଇନ୍ଦ୍ର ଅବା ଚନ୍ଦ୍ର ବା ମହେଶ ହୋଇବ । ୫ ।

ନୋହନ୍ତି ନେତ୍ର-ନିକର ନୋହନ୍ତି ଶଶୀ ସୁନ୍ଦର
ନୋହନ୍ତି ନୂତନ ସୁଧା— କର-ମୁକୁଟ
ମାୟାରେ ଯେବେ ନୋହନ୍ତେ ଦେବୀଙ୍କ ପଛେ ନ ଥାନ୍ତେ
ଦେବୀ ଅବା ଏଥେଁ କରି ଅଛନ୍ତି ଦୂତ
ରହ ମନ ତୁ ସ୍ଥିର ହୋଇ
ନ ପୁଣି ସେ ପଥ ପୁରୁଷ ଏ ନୋହଇ । ୬ ।

ପଥ ପୁରୁଷର ଠାଇଁ ଅଛୁ ଯେ ବୁଦ୍ଧି ବଳାଇ
ତହୁଁ ନିକା ଆନ ଅଭିଳାଷେ ହରିତ
ମୁଁ ତୋତେ ଯୋଡ଼ୁଛି କର ଛାଡ଼ ସେନେହ ଏହାର
ବ୍ୟଭିଚାର କରିବାର ଅତି ନିନ୍ଦିତ
କିବା ଏବେ ରକ୍ଷା ପାଇଲୁ
ଏ ସଂଶୟୁ ଜୀବନ ରକ୍ଷାକୁ ହୋଇଲୁ । ୭ ।

ପୁଣି ଦଣ୍ଡେ ସ୍ଥିର ହୋଇ ଶରଦ-ସିତାଂଶୁମୁଖୀ
ବିଚାରଇ କେମନ୍ତ ବୋଲିବା ନୋହଇ
ଇନ୍ଦ୍ରଜାଲ ଦରଶନ ପଚ୍ଛହିଁ ସେହି ବିଧାନ
ସେହି ଶୋଭା ଏଥି ଆନ ଦିଶଇ ନାହିଁ
ତେଣୁ ପ୍ରିୟ ଏ ଅନୁମାନ
ନିଶ୍ଚୟ ହୋଇବ ସେହି ପୁରୁଷ ରତ୍ନ ।୮।

ଏ ଯେବେ ସେହି ନୋହିବ ମୋହୋ ମନ କମ୍ପା ଯିବ
ନ ଯିବା ସ୍ଥଳକୁ ମନ କିଷ୍ଟେ ନ ଯାଇ
ତଥାପି ସଂସାରେ ଯୁବା କେତେ କେତେ ନ ଦେଖିବା
ମୋହୋ ଅଭିଳାଷ କାହିଁ ବସଇ ନାହିଁ
ଯେଉଁ ଦିନୁଁ ଇନ୍ଦ୍ରଜାଳିକ
ମୋତେ କରାଇଲା ଏ ନୂତନ ଅଲୋକ ।୯।

ତହିଁ ପୂର୍ବେ ଏ ସଂସାର ଯେତେକ ପୁରୁଷ ସାର
ଅଭିଳାଷେ ଅନାଇବା ଜାଣି ନ ଥିଲି
ଯେଉଁ ଦିବସୁଁ ଦେଖିଲି ମନ ଲୁବ୍ଧି ଏଥିଁ ଦେଲି
ଆନ ସ୍ପୃହା ନ କରିବି ସଂକଳ୍ପ କଲି
ଯେବେ ସେ ପୁରୁଷ ନୋହିବ
ମୋହୋ ନେତ୍ର ମନ କମ୍ପା ତହିଁକି ଯିବ ।୧୦।

---

# ନାୟିକା ଚିଠାଉ

## (ଉପେନ୍ଦ୍ର ଭଞ୍ଜ କୃତ)

## ରତ୍ନମଞ୍ଜରୀ—ନବମ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ପ୍ରବେଶ ହୋଇ ସେ ବୋଲଇ ଜଙ୍ଗମ ମଧୁର କୋମଳ ସ୍ୱର
ପ୍ରିୟା ସନ୍ଦେଶ ତୋ ଆଣିଛି ଏ ହଂସୀ ବୋଲି ଗଲା ଅପସରି ।୧।
ଶୁଣି ନୃପସୁତ ହଂସୀରେ ବିନୀତ ହୋଇ ବହୁତ କହିଲା
ମୋର ପାଇଁ ଏତେ ଦୁଃଖ ସେ ଅବଳା ଲଭିଛି ମତ୍ୟେ ବୋଇଲା ।୨।
ଶ୍ରୀହସ୍ତ-ପତ୍ରିକା ଦେଇଛି କି ମୋର ପରାଣରମଣୀ ତୋରେ
ନୋହିଲେ ଏ ପ୍ରାଣ ନିଶ୍ଚୟେ ତେଜିବି ଏହା କହିଲ ତୋହୋରେ ।୩।
ବୋଲଇ ହଂସୀ ତୁ ଶୁଣ କଳାଧର ମନୋରମା ପ୍ରିୟେ ତୋର
ଯେନ ଯେନ ପ୍ରେମପତ୍ରିକା ଦେଇଛି ଚିତ୍ତ ଦୁଃଖିତ ନ କର ।୪।
ସମ୍ଭ୍ରମ ହୋଇ ପତ୍ରିକା ଘେନି କରେ ହୃଦେ ନେଇ ଲଗାଇଲା
ଚିତ୍ତ-ତୃଷିତ-ଚାତକ କି ନବୀନ ଘନ ଜୀବନ ଲଭିଲା ।୫।
ରଙ୍କ କି ପାଇଲା ଦିବ୍ୟ ଶାଳି ଅନ୍ନ ତେସନ ଭ୍ରମରବର
ଦାବତାପିତ ନବୀନ ବଲ୍ଲରୀ କି ପାଇଲା ଘନ ଆସାର ।୬।
ଚକୋର ଲଭିଲା କି ସୁଧା କିରଣ, ପଦ୍ମବନ କି ମିହିର
ରଥାଙ୍ଗ ଯୁଗ କି ଲଭିଲେ ପ୍ରଭାତ, କୋକିଳ କି ସହକାର ।୭।
ଦରିଦ୍ର ହସ୍ତେ କି କୋଟିନିଧି ହେଲା, ତେତେକେ ପ୍ରାପ୍ତେକ ହୋଇଲା ।
ମୃତ୍ୟୁ ଶରୀର କି ଜୀବନ ଲଭିଲା, ତେସନ ଆନନ୍ଦ ହେଲା ।୮।
କରେ ଧରି ପତ୍ର ଅଧ ବୀର ପାତ୍ର, ନୟନେ ନୀର ପୂରିତ
କହିବାକୁ ବାଣୀ ମୁଖେ ନ ଆସଇ, କଣ୍ଠେ ହୋଇଲା ରୁନ୍ଧିତ ।୯।
କଳେବର ଯାକ ପୁଲକ-ପୂରିତ ବିକଚ ନୀପ ଆକାର
ବିଦ୍ରୁମ ଅଧର ଯୁଗଳ କମ୍ପିତ କୁସୁମଶରେ କାତର ।୧୦।

——o——

# ଗୁଣ୍ଡିଚା ବର୍ଣ୍ଣନା

(ଦୀନକୃଷ୍ଣ ଦାସ)

## ଜଗମୋହନ ଛାନ୍ଦ

( କେଦାର ରାଗ ଝମ୍ପା )

ଯଉଁ ଆଷାଢ଼ ମାସ ପ୍ରବେଶ
ହୁଅନ୍ତେ ଘନ ଘୋଟି ଆକାଶ
ଚିରି ମସ୍ତକ ଗିଳି କରଇ ଗର୍ଜ୍ଜର ଘୋଷ ହେ

ମେଘ-ପୁଷ୍ପରେ ମେଦିନୀ ବେଶ
ଉତ୍ତାପ ନାଶି କରେ ସୁବାସ
କୃଷି-କାରକଆଦି ମାନସ କରେ ଉଲ୍ଲାସ ହେ

ମହୀରୁହେ ମୁଞ୍ଚନ୍ତି ମଳିନ ଭାବ ହେ
ମହୀତଳେ ବେଙ୍ଗେ କରନ୍ତି ରବ ହେ ।

ମାନସରକୁ ପଶନ୍ତି ହଂସେ
ମହୀରେ ଇନ୍ଦ୍ରଗୋପ ବିକାଶେ
ମାଣିକ୍ୟ ମଣ୍ଡି ହୋଇଲା ପ୍ରାୟେ ସୁନ୍ଦର ଦିଶେ ହେ ।୧।

ଫୁଟନ୍ତି ଗୁରୁ ଭ୍ରମର ଫୁଲ
ଫୁଲ ବଶିଶ-ଭ୍ରମର ତୁଲ୍ୟ
ଝଙ୍କାରଚନ୍ଦ୍ରମୁଖୀ ବରଷ କାଳେ ଯେ ଶାଳ ହେ ।

ଯଉଁ-ଋତୁରେ ଅତ୍ୟନ୍ତ ଜଳ
ହୋଇ ବଢ଼ଇ ଦମ୍ପତି ବୋଲ
ଏକାକୀ ଲୋକମାନଙ୍କୁ ହୋଏ କନ୍ଦର୍ପ ଭଲ ହେ ।

ନାମୀ କାମିନୀ ଯାହାଁ ହେଲେ ଅଭେଟ
ଭୋଗ କରନ୍ତି କାମ କୃପାଣ ଚୋଟ ହେ

ଘନେ ଅନ୍ଧାର ହୋଏ ସଘନ
ପଥିକ ଜନେ ପଡ଼େ ସଙ୍କଟ
ଆରତ ହୋଇ ବୋଲନ୍ତି ରଖ ଚନ୍ଦ୍ରମୁକୁଟ ହେ ।୨।

ଅତି ବିକଟ ଡାହୁକ ରଟ
ଯେଉଁ କାଳରେ ହୋଏ ଉତ୍କଟ
କେକା କେକୀଗଣ-ମଣ୍ଡଳୀ-ମଧ୍ୟେ କରନ୍ତି ନାଟ ହେ ।

ଅବାଟ ବାଟ ହୋଏ ଅବାଟ
ହୋଏ ଆଚ୍ଛନ୍ନ ହୋଇ କୂପୀଟ
ତଟିନୀ ଜଳ ପ୍ରବଳ ହୋଇ ବଳନ୍ତି ତଟ ହେ ।

ନାବ·ଯୋଗେ ନାବିକେ ଜଗତି ଘଠ ହେ
ପଥିକଙ୍କ ଗମନ ହୁଅଇ ମଠ ହେ
ସବୁ ଆଡ଼ରେ କମଳମହି
ପଦ୍ମକୁମୁଦ ଅଦୃଶ୍ୟ ହୋଇ
ଥଳକମଳ କମଳପନ୍ତି ଫୁଟି ପଡ଼ଇ ହେ ।୩।

ମଲ୍ଲୀ ମାଳତୀ ଜାତି କଦଳୀ
କୁଟଜ ଆଦି କଦମ୍ବେ କେଳି
କରନ୍ତି ଯେଉଁ ସମୟେ ଭୃଙ୍ଗ·କଦମ୍ବେ ମିଳି ହେ ।

ରମା-ଅଧର-ହାସକୁ ବଳି
ଫୁଟଇ ଯହିଁ ଗଙ୍ଗଶିଉଳୀ
ଯହିଁ ଅନଙ୍ଗ ବିରହୀ ଅଙ୍ଗ ଦହଇ ଜାଳି ହେ ।
ଏହି ପ୍ରକାରେ କେତେ କହିବି ଭାଳି ହେ
ପ୍ରସଙ୍ଗକୁ ସେ ଏତେ ବୋଇଲି ଛାଳି ହେ ।
ପ୍ରଧାନ ରସ ଯିବାକୁ ଉଳି
ରଖିଲି ରତ୍ନବନ୍ତି ନାବଳି
ଏଣୁ କରି ସେ ସମସ୍ତ ଲୋକ ସୁଖ ସଙ୍ଖାଳି ହେ ।୪।

ଏମନ୍ତ ଯଉଁ ଆଷାଢ଼ ମାସ
ଶୁକ୍ଳଦ୍ୱିତୀୟା ତିଥି ଦିବସ
ପୁଷ୍ୟାନକ୍ଷତ୍ର ସହିତେ ହୋଇଥାଇ ପ୍ରବେଶ ହେ
ସେହି କାଳରେ ଦେବ ନରେନ୍ଦ୍ର
ମହା-କରୁଣାକର-ମହେନ୍ଦ୍ର
ଅରତ-ଅଗ-ଅନ୍ଧାର-ଚନ୍ଦ୍ର ବଜେ ପ୍ରକାଶ ହେ ।
ପ୍ରାତେ ମଣୋହି ସାରି ବାହାର ହୋଇ ହେ
ବୀରବେଶରେ ବୀରଛନ୍ଦୀ ଧରି ହେ
ବାଜଇ ବୀରବାଦ୍ୟ ଅନେକ
ଘଣ୍ଟ ମର୍ଦ୍ଦଳ ମେଢା ଝମକ
ତିନି ପୁରେ ଚମକେ ଦମାଳ ଦର୍ଶନ ପାଇଁ ହେ ।୫।
ଶଙ୍ଖ ମହୁରୀ ଝାଂର କାହାଳୀ
ଜୟ ଜୟ ଏକେ ହୁଳହୁଳି
ମଙ୍ଗଳ ପାଠ ମଙ୍ଗଳ ଗୀତ ନୁହଇ ଜାଳି ହେ
ମହିମା ଡାକ ଅନେକ ପଡ଼େ
ଅନେକ ବର୍ଣ୍ଣ ପତାକା ଉଡ଼େ
ଖଣ୍ଡ ଚାମର ଚଳେ ସମୁଦ୍ର ବଳି ହେ
ଅବିରତେ ଅଗରୁ ଧୂପହିଁ ବାସେ
ଆକାଶରୁ ସୁବାସ ଫୁଲ ବରଷେ
ଅର୍ଦ୍ଧ ଆକାଶେ ଅମରେ ରହି
ଅତି ପୁଲକ ଆନନ୍ଦେ ଗହିଁ
ଲହରୀ ସ୍ତୁତି କରନ୍ତି ଭକ୍ତ ଭାବେ ସନ୍ତୋଷେ ହେ ।୬।

———

# ପ୍ରେମ ପଞ୍ଚାମୃତ

## (ଭୁପତ ପଣ୍ଡିତ)

## ପ୍ରଥମ ଅଧ୍ୟାୟ

ଶ୍ରୀହରେ କୃଷ୍ଣ ରାମ ନାମ
ଚାରି ଜଗମେ ଅନୁପାମ ।
ଶ୍ରୀପୂର୍ଣ୍ଣବ୍ରହ୍ମ ନାମମୟି
ନାମ ଶବଦରୂପେ ଥାଇ ।

ସେ ସତ୍ୟ ନିତ୍ୟ ନିରୁପମ
ଶବଦ ବ୍ରହ୍ମ ନିଜ ଧାମ ।
ଜୀବ ଅଜୀବ ଫୁଲ ଶୂନ୍ୟେ
ସର୍ବତ୍ର ସମାନ ସମ୍ପୂର୍ଣ୍ଣେ ।

ଦଶଦିଗରେ ସମ ବ୍ୟାପି
ଶବଦବ୍ରହ୍ମ ନାମରୂପୀ ।
ବର୍ଣ୍ଣରେ ନାମ ନ ମିଶଇ
ସବୁହିଁ ବର୍ଣ୍ଣ ନାମମୟି ।

ଯେସନେ ପିଣ୍ଡେ ବ୍ୟାପି ପ୍ରାଣ
କେବଳ ମୂଳ ନୋହେ ସ୍ଥାନ ।
ସର୍ବ ସମ୍ପୂର୍ଣ୍ଣ ନାମ ରହି
ସମ୍ମୂଳ କରି ନୋହେ କହି ।

ସକଳ ରୂପ ନାମୁଁ ଜାତ
ନାମଟି ନିତ୍ୟ ସତ୍ୟ ତତ୍ତ୍ୱ ।
ଅବ୍ୟୟ ଅକ୍ଷୟ ଅଥୟ
ନାମଟି ଫୁଲ ଶୂନ୍ୟମୟ ।

ନାମରୁ ପ୍ରଣବ ସମ୍ଭୂତ
ପ୍ରଣବୁଁ ଚାରି ବେଦ ଜାତ ।

ଶ୍ରୁତି ଯେ ମାତା ରୂପ ଧରି
ଅଠର ପୁତ୍ର ଜାତ କରି ।

ତହୁଁ ବୃଦ୍ଧତା କଲା ଜାତ
ଏ ହୂପେ ବଂଶ ଅପ୍ରମିତ ।

ସଚ୍ଚିଦାନନ୍ଦ ଭଗବାନ
ନାମ ପରମ ବ୍ରହ୍ମଜ୍ଞାନ ।

ମାତାଏ ବୋଇଲେ ଏ ସତ
ପୁତ୍ରଙ୍କ ବାକ୍ୟ ସନମତ ।

ପ୍ରମାଣ ବୃଦ୍ଧତାଙ୍କ ମତେ
ସେ ସତ୍ୟ ବଂଶାନୁଚରିତେ ।

ଏଣୁ ଯେ ଭଜେ କୃଷ୍ଣନାମ
ସର୍ବସମ୍ମତେ ଏ ଉତ୍ତମ ।

ଯେ ସୁର-ନର-ନାଗଭାଷା
ବିବିଧ ବାକ୍ୟ ଦେଶଦେଶା ।

କୃଷ୍ଣ ମହିମା ଯହିଁ ଶୁଣି
ସେ ସର୍ବ ବାକ୍ୟରେ ମୂର୍ଦ୍ଧନି ।

ଯେବେ ନ ଥାଇ କୃଷ୍ଣରସ
ସେ ସପକୃତେ କାର୍ଯ୍ୟ ହସ ।

ପାଂଦସନେ ଗୁଞ୍ଜଫଳ
ଥିଲେ ନୋହଇ ବହୁ ମୂଲ୍ୟ ।

ଚଗ୍ର କନାରେ ମଣିବର
ଥିଲେ ନ ତୁଟେ ମୂଲ୍ୟ ତାର ।

ସୁର-ଭାଷାହିଁ ରସମୟେ
ସେ ନାରିକେଳଫଳ ପ୍ରାୟେ ।

କ୍ଲେଶେ ହୋଅଇ ରସଭୋଗ
ସବୁଙ୍କୁ ନୋହେ ଉପଯୋଗ ।

ଭାଷା ସୁପକ୍ୱ ରମ୍ଭା ପ୍ରାୟ
କୋମଳ ସ୍ୱାଦୁ ରସମୟ ।
ଅକ୍ଳେଶେ କର ତାକୁ ଭୋଗ
ସକଳ ଜୀବନେ ଉପଯୋଗ ।
କି ପରାକୃତ ସଂସ୍କୃତ
ସେ ଭାବଗ୍ରାହୀ ନନ୍ଦସୁତ ।
ଗାଳି ଶୁଣଇ ଗୋପୀମୁଖେ
ବେଦ ନ ଶୁଣେ ତେତେ ସୁଖେ
ଏ ଭାବ ମନରେ ବିଚାରି
ଭାଷାକୁ ଅବଜ୍ଞା ନ କରି ।
ସୁଜନେ ଶୁଣ ଦେଇ ଚିତ୍ତ
ନିର୍ମଳ ଗୋବିନ୍ଦ ଚରିତ ।
ନାନା ପ୍ରକାରେ କୃଷ୍ଣରସେ
ବର୍ଣ୍ଣେ ଗ୍ରନ୍ଥଏ ଲବ ଲେଶେ ।
ଶ୍ରଦ୍ଧା ବଳଇ ଯାର ମନେ
ସେ ପ୍ରାଣୀ ଧନ୍ୟ ତ୍ରିଭୁବନେ ।
ଏ ରୂପେ ସନ୍ତମୁଖୁଁ ଶୁଣି ।
ମୁଁ ଏହା ମନେ ମନେ ଗୁଣି ।
ଆରମ୍ଭ କଲି ଏ ଚରିତ
ଭକ୍ତିବେଦ ଭାଗବତ ।

ଶ୍ରୀକୃଷ୍ଣ-ଗୁଣ-କର୍ମମାନ
ଧ୍ୟାନକୁ ପଶୁରଇ ମନ ।
ହେ ଧ୍ୟାନ ଗୁରୁ ତୁମ୍ଭେ ମୋର
ସଂସାର-ସାଗରୁ ଉଦ୍ଧର ।
ଯେ ବ୍ରହ୍ମ ସତ୍ୟନିତ୍ୟ-ବାସୀ
ସେ କିମ୍ପା ଗୋପପୁରେ ଆସି ।

ଗୋରୁ-ଗୋପାଳ-ଗୋପୀସଙ୍ଗେ
ବନେ ବାହୁଟରେ ନାନାରଙ୍ଗେ ।
ଯାହାର ଅଙ୍ଗୀରେ ଜଗତ
ବ୍ରହ୍ମାଣ୍ଡ ହୋନ୍ତି ଆତଯାତ ।
ସେ କି ନ ପାରେ ଅଙ୍ଗୀ କରି
ଆପଣେ ଜନ୍ମା ଅବତରି ।
ନିତ୍ୟରୁ ସୁଖାନନ୍ଦ ରସ
ଏ ବ୍ରଜବୃନ୍ଦାବନେ ବସ ।
କହ ଏହାର ହେତୁ କର୍ମ
ଯେଣେ ଖଣ୍ଡଇ ଭବଭ୍ରମ ।

ଏମନ୍ତ ମନ ତତ୍ତ୍ୱ ଶୁଣି
ଗ୍ୟାନ ବୋଲନ୍ତି ତତ୍ତ୍ୱବାଣୀ ।
ଶୁଣ ହୋ ମନ ଏକଚିତ୍ତେ
ପୁରାଣ ଶ୍ରୀଭାଗବତେ ।
ସଂଶୟ ଥିଲା ରାଜାମନେ
ସ୍ମରଣ କଲା ଏକଦିନେ ।
ସଂଯୋଗେ ଆସିଥିଲେ ମୁନି
ପ୍ରଶନ କଲା ନୃପମଣି ।
ଶ୍ରୀକୃଷ୍ଣ ଭାବ ଅନୁସରି
ମୁନି ତା କହିଲେ ବିସ୍ତାରି ।
ଶୁଣି ସଂଶୟ ଗଲା ତାର
ସଂସାରୁ ହୋଇଲା ଉଦ୍ଧାର ।
ହୃଦରେ ଧରି ସେହିମତ
କୃଷ୍ଣକୁ ଲଭିଲା ତୁରିତ ।

କୃଷ୍ଣଭଜନ ମହାତ୍ମ୍ୟ
ସଂସାର-ସମୁଦ୍ରକୁ ନାବ ।
ନିଗୁଣ-ଛେଦନ-କୁଠାର
ସର୍ବ ଶାସ୍ତ୍ର ମଧ୍ୟେ ସାର
ନିଗମ-ବାଞ୍ଛା-ବୃକ୍ଷ-ଫଳ
ଭଗବତ-କଲ୍ପଲତା-ମୂଳ ।
ମରମ ପରମ ଗୁପତ
ଶ୍ରୀଗୁରୁ କୃପାରୁ ବ୍ୟକତ ।
ମୁନି କହିଲେ ରାଜା ଆଗେ
ନୃପତି ଶୁଣିଲେ ସରାଗେ ।
ସେ ରାଜା ମୁନିଙ୍କ ବିଧାନ
କହିବା ସାବଧାନେ ଶୁଣ ।

ଗୋବିନ୍ଦ ଭକ୍ତ ଅନୁପାମ
ଭୂପତି ପରୀକ୍ଷିତ ନାମ ।
ସୁନ୍ଦର ଶୁର ତେଜବନ୍ତ
ସକଳ ସୁବିଦ୍ୟା ପଣ୍ଡିତ ।
ଦୟାଳୁ ଦାତା ପରହିତ
ବିପ୍ର-ପୋଷଣେ ଅବିରତ ।
ପ୍ରଜା ପାଳନ ସତ୍ୟବାଣୀ
ସ୍ୱଧର୍ମ ବେଦମତ ଘେନି ।
ଗୁହାରି ଶୁଣନ୍ତି ଯେ ଠାବେଁ
ପଛ ଚରଣ ଆଗ ନୋହେ ।
ତକ୍ଷଣେ ବୁଝାମଣା କରି
ଶତ୍ରୁ ମଇତ୍ର ସମସରି ।
ଦଣ୍ଡ ଦା ମଣ୍ଡ ଯେହି ଯୋଗେ
ତେବେ ଚରଣ ଚଳେ ଆଗେ ।

ଯେବେ ଶୁଣନ୍ତି ରିପୁବଳ
ସେହି ଶବଦେ ଅନୁକୂଳ ।
ଏମନ୍ତ ବଳରେ ବୀରମଣି
ଗୋଡ଼ାଇ ମିଶନ୍ତି ସରଣି
ସଂଗ୍ରାମେ କରି ଶତ୍ରୁ ଜୟ
ସବୁରି ପଛରେ ବିଜୟ ।
ଏ ରୂପେ ତାର ରାଜନୀତି
ସେ ବୀର ଅର୍ଜୁନର ନାତି ।
ତାହାଙ୍କ ରାଜ୍ୟଲୋକଙ୍କର
ଶୁଣ ଯେମନ୍ତ ବ୍ୟବହାର ।
ସର୍ବ କୃପଣ ଦୁଃଖଦାନେ
ନିର୍ଦ୍ଦୟ ଦୁର୍ଦ୍ଦଶାନାଶନେ ।
ସ୍ୱରୂପେ ପରଦାର ରସି
ଯାହାଟି ସେବନ୍ତି ତୁଳସୀ ।
ପରପୁରୁଷେ ନାରୀମନ
ଯାହାଟି ଶଙ୍କରସେବନ ।
କେବଳ ବିଦ୍ୟାମଧ୍ୟେ ବାଦ
କେବଳ ଗଣ୍ଡସ୍ଥଳେ ମଦ ।
ଅଶ୍ୱ ବଚନେ ଗଦ୍‌ଗଦ
କୁଟିଳ କେଶରେ ଅଳନ୍ତ ।
ସୁହୃ-ମାତୁଳ-ମୁଖେ ଗାଳି
ମାଡ଼-ମାନବେ ଗୃଠଶାଳୀ ।
ଦୁର୍ଲଭ ଦରିଦ୍ର ବ୍ୟାଧିକ
କେବଳ ଶଶାଙ୍କେ କଳଙ୍କ ।
ଲଙ୍ଘନ ଏକାଦଶୀ ଦିନେ
କେବଳ ତୀର୍ଥାନ୍ତ-ଗମନେ ।

ସ୍ୱଦାର ରତ୍ନସ୍ମନେ କାମ
ପୁନ୍ନ ନ ପଢ଼ି ଗଲେ ତମ ।
ମ୍ଲେଚ୍ଛ ବୈଷ୍ଣବ-ପଦରଜେ
ସାମର୍ଥପଣ ପରକାର୍ଯ୍ୟେ ।
ସପନ ପ୍ରାୟେ ମିଥ୍ୟା ଦେଖି
କୃଷ୍ଣ କଥନେ ଅଶ୍ରୁ ଆଖି ।
ସ୍ୱଦେଶେ ଲକ୍ଷ୍ମୀ ଥାନ୍ତୁ ସୁଖେ
ବିଦେଶେ ଯଶ ପରମୁଖେ ।
ବଦନ ପରଯୁବତୀଙ୍କ
ଗଣେଶ-ଚଉଠି—ଶଶାଙ୍କ

# ପ୍ରେମସୁଧାନିଧି

## (ଉପେନ୍ଦ୍ର ଭଞ୍ଜ)

## ଚତୁର୍ଦ୍ଦଶ ଛାନ୍ଦ

ରାଗ—ଶଙ୍କରାଭରଣ

ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜି
ଦିଶେ ଯଥା ଦର୍ପକ ଦର୍ପଣେ ଥିଲେ ମାଜି ।
ଗୃହେଁ ଭ୍ରମର କାତର
ଲେଖି ଆରମ୍ଭିଲ୍ଲି ବାହ ବନମ୍ଭୁ-ପତର ।

ଜାନକୀ-ବଲ୍ଲଭ-ପଦ୍ମପାଦେ ଚିତ୍ତ ଥାଉ
ରାଜସୁତା ପ୍ରୀତି-କଉଶଳାକୁ ଚହାଉ ।
ଏବେ ମରୁଅଛୁ ଝୁରି
ଦରିଦ୍ର ରତନ ପାଇ ହରାଇଲା ପରି ।

ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁ ନାହିଁ ବହୁ ଜାହିଁ ଆନ ପ୍ରତୀକାର ।
ନୂଆ ଅନ୍ଧ ପ୍ରାୟେ ହୋଇ
ଅନ୍ୟକ୍ଷଣେ ଅକୂଳ ବୁଡୁଛି ପ୍ରାଣସହି ।

ଦୂରେ ଥିଲେ ପାଶେ ଥିଲ ପରି ଥିବୁ ଜେନ
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ ।
ପ୍ରୀତି ଅଭେଦ୍ୟ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।

ଯେତେ ଦୂରେ ପନ୍ତ ପଡ଼ି ଥିଲେ ରେ ନବୀନା
ଚକ୍ଷା (କି) ନୁହଁଇ ଆନେ ବୃକ୍ଷନାମ ବିନା ।
ବନ୍ଧୁ ! ତେମନ୍ତ ମୁଁ ତୋର
ସବୁଠାରେ କୁହାଉଛି ସୁନ୍ଦରୀ-କୋଯୁର ।

ଯେଣେ ଅନାଇଲେ ଇନ୍ଦ୍ରଜାଲ ପ୍ରାୟେ ଦିଶୁ
ମୁକୁର-ବିମ୍ବ-ପରାୟେ ପାଶକୁ ନ ଆସୁ ।
ଏଡ଼େ ହଠ କାହିଁ ପାଇଁ
ମୋହୋ ଜାଣିବାରେ ମୁଁ ତ ଦୋଷ କରି ନାହିଁ ।

ରବିକର ନ ଛାଡ଼ିଲପରାୟେ ମେଘକୁ
ମୋ ମନ ନ ଛାଡ଼େ ତୋ ପୃଥୁଲ ଉରଜକୁ ।
ଶିବେ ଆଶ୍ରେ କରି ବୃଷ
ଘାସ-ଗ୍ରାସ-ପ୍ରାୟେ ତ ନ ଗଲା ମୋର କ୍ଲେଶ ।

ତୋ ପ୍ରୀତିରେ ଦ୍ରବେ କାମ-ବହ୍ନିଶିଖକୁ ସହି
ବଧଶୀଳ ପ୍ରାୟେ କି ହୋଇଲା ମୋର ଦେହି ।
ମନ ଲୌହ ହୋଇଥିଲା
ତୋ ଚୁମ୍ବ-ଚୁମ୍ବକ-ବଳେ ହୃଦୁଁ କାଢ଼ି ନେଲା ।

ବିଦଗଧ ଶାମୁକରେ ଜଳ ଦେଲା ପ୍ରାୟେ
ସନ୍ତାପିତ ହୋଉଛି ବିରହଯୋଗୁଁ କାୟେ ।
ଚନ୍ଦନାଦି ଉପଚାର
ହୋଉଛି ତପତ ଲୌହ ଜମ୍ବାଲ ପ୍ରକାର ।

ବିରହକୁ ଉପଚାର ମାନ ମନୋହାରୀ
ପଲ୍ଲବ ଶଯ୍ୟାଦି ଯେତେ ବିଅର୍ଥରେ କରି ।
ଏବେ ଅନୁଭବ ହେଲା
ଛାହରେ ମଙ୍ଗଳ ପଦ ଯେମନ୍ତ ରହିଲା ।

ବୁଡ଼ି ନଦୀ-ତଟରୁ ପରାୟେ ଜୀବନ
ସନ୍ଦେହ ପଡ଼ୁଛି ଏଥିଁ ତରିବ କେସନ ।
ରାହୁ ଦଶା ପ୍ରାୟେ ମୋର
ସୁଧାପାନ ଉତ୍ତାରୁ ଛେଦନ ହେଲା ଶିର ।

# ବ୍ରଜବିହାର

## (ଦାଶରଥି ଦାସ)

### ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା

ନାନା ରଙ୍ଗେ ଖେଳନ୍ତି ଗୁଲଗୁଣ୍ଡା । ଖଣ୍ଡଦୂର ଯାଇଣ ପଛଗୁଣ୍ଡା ।
ତୁଣ୍ଡେ ଅଙ୍ଗୁଳି ଲାଗେ ଜରଜର । ଖଣ୍ଡକେଶ ଡଇଲେଁ ସରସର ।
ଡାଡ଼-ଚୂଳ ଅଲକା ବେଢ଼ ବେଣୀ । ପଦ୍ମ ଚୁମ୍ବେ କି ଶିଶୁଅଳି-ଶ୍ରେଣୀ ।
କର୍ଣ୍ଣେ ହେମ-ଗୁଣା-ଗୁଞ୍ଜା ପ୍ରବାଳ । ଗଳେ ହେମ-ପଦକ କଣ୍ଠିମାଳ ।
ବାହେ ବାହୁଟି କରେଣ କଙ୍କଣ । କ୍ଷୁଦ୍ର ମୁଦ ଅଙ୍ଗୁଳି ବିଭୂଷଣ ।
ନବଜଳଦ ଯେ ନିର୍ମଳ ଗାତ୍ର । ମଣି ବିଦ୍ରୁମ କଟି ହେମସୂତ୍ର ।
ପାଦେ ନୂପୁର ରୁଣୁଝୁଣୁ ବାଜେ । ଚୁଆ ସିଂହ ବିକ୍ରମ ଠାଣି ସାଜେ ।
କରେ ଲବଣୀ ଆଣ୍ଠୁଆରି ବୁଲେ । ଅମା ଅମା ବୋଲଣ ହେମା ଗାଲେ ।
ମାଏ ଧୂଳି ଝାଡ଼ି କୋଳେ ଧରନ୍ତି । ମୁଖେ ଚୁମ୍ବ ଦେଇ ମଙ୍ଗଳ କରନ୍ତି ।
କୋଳେ ବସାଇ ଜାନୁ ଆଉଯାଇ । ସ୍ନେହ-ଜଳସେ ମନକୁ ମଜାଇ ।
ମୁଖ ନିରେଖି ହୁଅ ଉଲ୍ଲସଇ । ସୁଖ ବାତ୍ସଲ୍ୟ-ରସେ ବିଳସଇ ।
ନାନା କଉତୁକ ହାସ ପ୍ରଳାପେ । ବେଢ଼ି ବିରଜ-କାମିନୀ-କଳାପେ ।
କାହା ସ୍ତନରୁ କ୍ଷୀର ନସିଅଇ । ମୁଖ ଦେଇ କେ କଥା ଭଣିଅଇ ।
କେହୁ କର ପ୍ରସାରିଣ ନେନଇ । ଧାଇଁଆସିଅଛିବ ଏହୁ କହାଇ ?
କେହୁ ଶରଧାରେ କର ବଢ଼ାଇ । ଏକ ଆରକେ ନେନନ୍ତି ଛଡ଼ାଇ ।
ତରୁ ମଳୟ ଲାଗନ୍ତେ ଯେସନ । ଗୋପୀ କୃଷ୍ଣଅଙ୍ଗ ଲାଗି ତେସନ ।
ନିଜ ସହଜ ବିକାର ଲେଉଟିଲେ । କୃଷ୍ଣ ଅନୁରାଗଭାବେ ଲେଉଟିଲେ ।
କାଖ କରି ନେନ କୋଉଁ କାମିନୀ । ହୁଅ ପରେ ନଗୃହ କରେ ନେନ ।
ଘନ କଠିନ କୁଚପରେ ନାଚ । ବ୍ୟଥା କମଳପାଦ ପାଇ ଘୁଞ୍ଚ ।
ହେମଗିରି ଶିଖର କି ଶିଖିନ । ନୃତ୍ୟ କରଇ ରମଣୀମୋହନ ।
କେହୁ ବସାଇଣ ତାଳି ଧରଇ । ହାଥୀ ଝୁଲ ଝୁଲ ବୋଲି ବୋଲଇ ।

ଚଉପାଦେ ରହି ହରି ବୁଲନ୍ତି । ଦେହ ଫୁଟିବ ବୋଲିଣ ବୋଲନ୍ତି ।
ହାଥୀ ଝୁଲଇ ରେ ହାଥୀ ଝୁଲଇ । ଦହି ଦୁଧ ଖାଇ ହାଥୀ ଫୁଲଇ ।
ହାଥୀ କପାଳେ ସିନ୍ଦୂର ଶୋହୁଛି । ହାଥୀ ତାଳୁପରେ ଚୂଳ ବୋହୁଛି ।
ହାଥୀ ପଲ୍ଲଣି ଚାଲିବା ସାଜୋଇ । ହାଥୀ ବଳୟ ନୂପୁର ବାଜଇ ।
କାହିଁ ଥିଲା ଏ ଗୋପକୁ ଅଇଲା ; ସବୁ ସର ଲବଣୀ ତ ଖାଇଲା ।
ହାଥୀ ଗୋପରେ ପ୍ରମାଦ କରିବ ; କେହୁ ପାରିବ ଏ ହାଥୀ ଧରିବ ।
ହାଥୀ ବହିବ କନ୍ଧରେ କାହାକୁ । କେହୁ ବୋଲେ ଯୋଗ ଥିବ ଯାହାକୁ ।
କେହୁ ବୋଲେ ଚୁଆ ସିଂହ କହ୍ଲାଇ । ଆଗେ ଚାଲିଣ ପଛକୁ ଅନାଇ ।
କେହୁ ବୋଲେ କସ୍ତୁରୀ ଜୀବ ଗୋଟି । ଅଙ୍ଗସଉରଭ ଗନ୍ଧ ପ୍ରକଟି ।
କେହୁ ବୋଲଇ ନିଧନୀ-ଧନଆ । ଦୁଖ ସଂଖାଳୀ ରଙ୍କୁଣି ସୁନଆ ।
ଏକ ଆରକେ ମୁଖ ବାହୁନାଇ । ଏଥୁ ସୁଖ ସଂସାରେ ଆଉ ନାହିଁ ।
ଯେତେ ଅଛନ୍ତି ବ୍ରଜପୁର ବାସୀ । ସର୍ବ ଜନ ମନ ମୋହ ଆକର୍ଷି ।

---

# ବ୍ରଜବିହାର
## (କୃପାସିନ୍ଧୁ ଦାସ)
### ସପ୍ତମ ଛାନ୍ଦ
ରାଗ—କଲ୍ୟାଣ ଆହାରୀ ।

କହିବାରେ ଆଉ ଅଛି କି ସେ ସୀମା ରହିବାରେ ନାହିଁ ଜୀବନ ।
ସହିବାରେ ନାହିଁ ଚନ୍ଦନ ସୁମନ ବହିବାରେ ନାହିଁ ମଣ୍ଡନ ।
କୃଷ୍ଣ ହେ, ଅହି ବାରେ ସମ ମଣୁଛି ।
ନୋହିବାରେ ତୁମ୍ଭ ଦର୍ଶନବଶରୁ ଦହିବାରେ କାମ ଲାଗିଛି । ୧ ।

ଛାଡ଼ିଲାନି ସୁଧାଅଶନ ବସନ ଆଡ଼ିଲାନି ଦେହ ଦୁଖକୁ ।
ଏଡ଼ିଲାନି ବେଶଗୃହରୀ ଚତୁରୀ ମୋଡ଼ିଲାନି ମୁଖ ସୁଖକୁ ।
ବାଳା ଯେ, ହୁଡ଼ିଲାନି କଥାବେଳରେ ।
ଉଡ଼ିଲାନି ତୁଣ ପରାୟେ ମନ ତା ବୁଡ଼ିଲାନି ଖେଦ ଜଳରେ । ୨ ।

ଲଖିଲାନି ପ୍ରେମପଙ୍କେ ସେଉଁ ଦିନୁ ଲେଖିଲାନି ଧାତା ଏ ତାପ ।
ରଖିଲାନି ଲାଜ ଦୂର କରି ଯହୁଁ ଦେଖିଲାନି ଶ୍ୟାମସରୂପ ।
ବାଳା ଯେ, ଗୃଖିଲାନି ପ୍ରେମ ମଧୁର ।
ଶୁଖିଲାନି କଣ୍ଠ ସେ ରସ ଆସ୍ୱାଦ ଶିଖିଲାନି ଚିନ୍ତା ବିଧୁର । ୩ ।

ମାଜିଲାନି ଗୁଣ ଟଙ୍କାରି ମଦନ ସାଜିଲାନି ଫୁଲ ସାୟକ ।
ଭଜିଲାନି ଭସ୍ମଦଶାକୁ ବେଗରେ ଭୁଜିଲାନି ଦୃଢ଼କାମୁକ ।
ବାଳା ଯେ, ତ୍ୟେଜିଲାନି ଅନୁରାଗକୁ ।
ପୁଜିଲାନି କାମଦେବଚରଣରେ ବୁଜିଲାନି ନେତ୍ରଯୁଗକୁ । ୪ ।

ରଟିଲାନି ଗୁଣ କେତେକ ଏବେ ସେ ଖଟିଲାନି ସବୁ କର୍ମକୁ ।
ହଟିଲାନି ଏତେ ପ୍ରକାରେ ମଦନ ଭେଟିଲାନି ଆସି କର୍ମକୁ ।
ବାଳା ଯେ, ତୁଟିଲାନି ନ୍ୟାୟ ପଥରୁ ।
ଘଟିଲାନି ଯେଣୁ ଦେଖାଇ ନୋଇବ ଘଟିଲାନି କଥା ଏଠାରୁ । ୫ ।

ଘଷିଲେନ ଘନସାର ଯେତେ ସଖୀ ହସିଲେନି ଶାନ୍ତି ନ ଦେଖି ।
ଖସିଲେନ ପ୍ରଭ ଅଙ୍ଗରୁ ସୁଷମା ଦୁଷିଲେନ ଚମ୍ପା କେତକୀ ।
କୃଷ୍ଣ ହେ ! ବସିଲେନ କଞ୍ଜ-ଦଳରେ ।
କମ୍ପିଲେନ ହେମ-କଷଟିରେ ଯହୁଁ ଦକ୍ଷିଲେନ ତନୁ ଭୂଲରେ । ୬।

ଛଟକ ଶୁହୁଁ ବା ଭଙ୍ଗୀ ଅଛୁ ନିଜ ହାଟକବରଣୀ ସହିର ।
ଝଟକ ଗତି ତାର କହ ବସିଲେ ନାଟକ-ଘାଟରୁ ବାହାର ।
କୃଷ୍ଣ ହେ ! କଟକ ଧୂନି କର ଯେହ୍ନ ।
ଅଟକ କରିପାରେ ମନ ନୟନ ମଟକ ପକାଇବ ଦେହ ୭

ଡାକିଲୁ ବାତେ ଲଜ୍ଜାପ୍ରାୟେ ଏବେ ଯେ ଭଜିଲୁ ବିରହ ହ୍ରଦରେ ।
ବଳିଲୁ ଚନ୍ଦ୍ରମାକଳାକୁ କୁଣରେ, ଗୁଳିଲୁ ତା ଜର ମୁଦରେ ।
ବାଳା ଯେ, ଭୁଲିଲୁ ବିବେକ ନୀତରେ ।
ଛଳିଲୁ ଆରତଭଞ୍ଜନ ନାମକୁ କଳିଲୁ ତୁମ୍ଭଙ୍କୁ ପ୍ରୀତିରେ । ୮ ।

ଲଳିତ ଲୀଳା ବିଳାସରୁ ବାହାରେ ସ୍ଖଳିତ ହୋଇଅଛି ବାଳା ।
ଚଳିତ ଦୃଷ୍ଟି ରଖିଛି କି ଆଉ ସେ ଦଳିତ-ଉତ୍ପଳକୁନ୍ତଳା ।
କୃଷ୍ଣ ହେ, ଫଳିତ ପାକେ ହେଲୁ ଏହ ।
ଗଳିତ ଚମ୍ପକ ପଦ୍ମପଲାଶେ କଳିତ କରିଅଛି ଦେହ । ୯ ।

——

# ଯୁଗଳ ରସାମୃତ ଲହରୀ

## (ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା)

### ପ୍ରଥମ ଛାନ୍ଦ

(ରସକୋଇଲି ବାଣୀରେ ଗାଇବ)

ଛାଡ଼ିଲୁନି ରାଧା ପୂର୍ବ ଗୁମାନ,
ଗଢ଼ିଲୁନି ଏବେ ରସରେ ମନ,
ଝଡ଼ିଲୁନି ତନୁ ଚନ୍ଦ୍ରାବଳୀରଙ୍ଗେ,
ଛୋଡ଼ିଲୁନି ତବ ସଙ୍ଗମ ରଙ୍ଗେ ।
ଗଡ଼ିଲୁନି ମହୀତେଯେ ଯେ ।
ପଡ଼ିଲୁନି ତବ ପ୍ରେମଗଣ୍ଡେ ବନ୍ଦୀ ପୋଡ଼ିଲୁନି ଧର୍ଯ୍ୟ ସେ ଯେ ଯେ । ୧
ମିଳିଲୁନି ମନ ଆମ୍ଭ ସଙ୍ଗରେ
ଛଳିଲୁନି ଆଶା ରସରଙ୍ଗରେ ।
ଭୁଲିଲୁନି ତବ ପ୍ରୀତି-କ୍ରନ୍ଦନ,
କଳିଲୁନି ସାର ଏହି ଭୁବନ,
ଝୁଲିଲୁନି ହୃଦ ପ୍ରେମେ ଯେ ।
ଜାଳିଲୁନି ଅଙ୍ଗୁଂ ଅନଙ୍ଗ ଅନଳ ଭାଳିଲୁନି ଜାମ ଦମେ ଯେ । ୨
ଢଳିଲୁଣି ସଦା ସଜନୀକୋଳେ,
ବଳିଲୁନି ସ୍ପୃହା ମୃଣାଳମାଳେ ।
ବୋଳିଲୁନି ଉଶୀର ତା ଶ୍ରୀଅଙ୍ଗେ,
ଚଳିଲୁନି ଶୁଣି ଆନ ପ୍ରସଙ୍ଗେ ସେ,
ଖୋଳିଲୁନି ନନ୍ଦ ଧରି ଯେ ।
ଡାଳିଲୁନି କରେ ବ୍ୟଜନ ବିରତେ ଗଳିଲୁନି ଅଶ୍ରୁଧାରା ଯେ । ୩
ଜାଣିଲୁନି ତୁମ୍ଭେ ରସିକବର,
ଶୁଣିଲୁନି ବଂଶୀଧ୍ୱନି ତୁମ୍ଭର ।
ଘେଣିଲୁନି ତାକୁ ଏ ଯୌନ ମାର,
ଶାଣିଲୁନି ଶରେ କରେ ପ୍ରହାର ସେ ।

ଭଣିଲ୍ଲନ ଧ୍ୱାହା ସଦା ହେ ।
ଅଣିଲ୍ଲନ ଅଙ୍ଗୀକାରେ ଭ୍ରୂଭଙ୍ଗୀରେ ଶୁଣିଲ୍ଲନ ମାରବଦ୍ୟା ହେ । ୪
ଦେଖିଲ୍ଲନ ଯହିଁ ଚନ୍ଦ୍ର ଏ ମୁଖ,
ଲେଖିଲ୍ଲନ ହୋଳା ପିତୁଳା ଶିଖ ।
ରଖିଲ୍ଲନ ସବୁ ବସ୍ତ୍ର ପଛେ
ଚୁଖିଲ୍ଲନ ସ୍ନେହମାଦକ ସ୍ୱଚ୍ଛେ ସେ,
ଶୁଖିଲ୍ଲନ ଝଁବ ତନ୍ତୁ ଯେ ।
ଶିଖିଲ୍ଲନ କଥା ବଖାଇ କହିବା ଯୋଖିଲ୍ଲନ ଅନୁମାନ ସେ । ୫
ଥୋଇଲ୍ଲନ ଯେଉଁ ଚନ୍ଦ୍ର ନୂପୁର,
ହୋଇଲ୍ଲନ ସେଟନୁ ସେ ହୁମ୍ବର ।
ବୋଇଲ୍ଲନ ସଖି ! ନାହିଁ ମୋ ସାହା,
ମାଇଲ୍ଲନ ମତେ କେଲଣି-ନାହା ସେ,
ପାଇଲ୍ଲନ ଯୁବା ଦୁଖ ହେ ।
ଧୋଇଲ୍ଲନ ନେତ୍ରଜଳେ କୁଚକୁମ୍ଭ କହିଲ୍ଲନ ଶିବ ରଖ ହେ । ୬
ଚେକଲ୍ଲନ କୁଳଭମାନ ଆସି,
ଚକଲ୍ଲନ ମନ ହୁମ୍ଭଙ୍କୁ ରସି ।
ଭଜିଲ୍ଲନ ଓଜ ଧର୍ମ ବଢ଼ାଇ,
ଖୋଜିଲ୍ଲନ ଜ୍ଞାନପକ୍ଷୀ ଉଡ଼ାଇ ସେ ।
ପୂଜିଲ୍ଲନ ପୁରହର ହେ ।
ହଜିଲ୍ଲନ ପତିବ୍ରତଧନ ମନୁଁ ବର୍ଜିଲ୍ଲନ ସେ ଆଦର ହେ । ୭
ନନ୍ଦିଲ୍ଲନ ଏବେ ଚନ୍ଦ୍ର ପବନ,
ଫାନ୍ଦିଲ୍ଲନ ତାହା ନ କହ ଆନ ।
କାନ୍ଦିଲ୍ଲନ ନବଘନକୁ ଚାହିଁ ।
ବନ୍ଦିଲ୍ଲନ ତମାଳକୁ କ କହି ସେ ।
ଛନ୍ଦିଲ୍ଲନ କାହ୍ନବଲ୍ଲୀ ଯେ ।
କୁନ୍ଦିଲ୍ଲନ କୁଚସମ୍ପୁଟ ଶୋକରେ ସନ୍ଧିଲ୍ଲନ ଦୁଖ ଗୃଲ ସେ । ୮

---

# କୃଷ୍ଣବିଳାସ

## (ଚକ୍ରପାଣି ପଟ୍ଟନାୟକ)

### ବିଂଶତି ଛାନ୍ଦ—ବର୍ଷା ବର୍ଣ୍ଣନା

କ୍ରମଶେ ଗ୍ରୀଷମ-ସମୟ ଶେଷ
ବରଷାକାଳ ହୋଇଲା ପ୍ରବେଶ ।
କଜ୍ଜ୍ୱଳରୁ ଜିତ କଳା ଜଳଦ,
ନବ କଳଭ ଘୋଟି କଲା ନାଦ ।
ଦାମିନୀ ଝଟକେ ।
ଅବଲୋକନେ ନୟନ ଅଟକେ । ୧

ନିଦାଘବାରଣ ଦାରଣ କରି
ପ୍ରଥମରେ ଘନସମୟ ହରି ।
ଗିରିବରଶୃଙ୍ଗେ କରି ନିବାସ
ଘନ ଘଡ଼ଘଡ଼ ଗର୍ଜନ ଘୋଷ ।
ରସନା ବିଜୁଳି ।
ଦଶନପନ୍ତି ତାର ବକମାଳୀ । ୨

ଝାଙ୍କି ବହିଲା ଝଞ୍ଜା ପ୍ରଭଞ୍ଜନ
ଝର ଝର ନୀରଧାର ପତନ ।
ସୁନାସୀର-ଚାପ ଗଗନେ ଉଦେ
ଦେଖି ତାହା ଶିଖୀ ମନପ୍ରମୋଦେ ।
କ୍ଷିଖରୀ ଶିଖରେ ।
ନୃତ୍ୟ କଲା ନାରୀବୃନ୍ଦ ପାଖରେ । ୩

ଭେକ ଡାହୁକ ଶବଦ ଶୁଭିଲା
ବନସ୍ଥଳୁ ଜାତବେଦ ଲିଭିଲା ।

ନଦୀମାନେ ପ୍ରବଳରେ ବଢ଼ିଲେ
ସେହି ବିପଥଗତ ବିଦେଶୀ ହେଲେ ।
ଧରଣୀ ପଙ୍କିଲେ
ପଡ଼ିବା ଭୟେ ପଥିକ ଶଙ୍କିଲେ । ୪

ମାନବତୀବାମାମୁଖସ୍ୱରୂପ
ମହୀରେ ପୂର୍ଣ୍ଣ ହେଲେ ଇନ୍ଦ୍ରଗୋପ ।
କୋପ ଅନ୍ତର ନାରୀହାସତୁଲ
ମଲ୍ଲୀବଲ୍ଲୀରେ ଶୋଭି ଦିଶେ ଫୁଲ ।
ଉତ୍ପଳ ଚୋଟରେ
ମାତିଲେ ତାହା ସଙ୍ଗେ ଅନଶରେ । ୫

ଭେକ ଡାକ ସହୁଁ ହେଲା ଗହଳ
ମୂକ ହେଲେ ଶୁଣି କୋକିଳକୁଳ ।
ଖଳ-ପ୍ରବଳେ ଯେହ୍ନେ ସାଧୁଜନ
ଆପଣା ଛନ୍ଦେ ହୁଅନ୍ତି ମଉନୀ
ଦେଖିଣ ବରଷା
ବିହଙ୍ଗକୁଳ ଆରମ୍ଭିଲେ ବସା । ୬

ଦୁର୍ଦ୍ଦିନେ ଦିନଗହ୍ନ ନୋହେ ବାରି
ଦିବସ ଦିଶେ ଯେସନେ ଶର୍ବରୀ ।
କମଳ କୁମୁଦ ବିକାଶ ଜାଣି
ଜାଣନ୍ତି ଲୋକ ଦିବା ଏ ରଜନୀ ।
ଚକ୍ରବାକ ଦୁଖୀ
ହେଲା ସବିତାଉଦୟ ନ ଦେଖି । ୭

ବାଣିଜ୍ୟକାରେ ବାଣିଜ୍ୟ ଛାଡ଼ିଲେ ।
ମାଣିକ ପାଣିବୃଷ୍ଟିରେ ବୁଡ଼ିଲେ

ଧରଣୀ ବନା ନବ୍ୟ ନୋହେ ତନ୍ତ
ତରୁଣୀ ବନୁ ଯୁବାବାଳ ପନ୍ଥ ।
ବଛୟୁ କୁସୁମ
ଫୁଟି ଦିଶିଲେ ଅତି ମନୋରମ । ୮

କୃଷିକାରକେ ତୋଷେ ଢାଳେ ଗୃଷ
ସମସ୍ତ ଜନେ ସଜାଡ଼ିଲେ ବାସ ।
ଚଇତ୍ର ମାସ ଜାଣି ସାଧ୍ୱୀକୁଳ
ରନ୍ଧିଲେ ସ୍ଥାନେ ସ୍ଥାନେ ଷଢ଼ ମେଳ ।
ଭାଗ୍ୟବନ୍ତ ଜନେ
ସେବା ତାହାଙ୍କ କଲେ ତୋଷ ମନେ ।

# ସଖୀଉକ୍ତି

## (୰ବନମାଳୀ ପଟ୍ଟନାୟକ)

## ନବାନୁରାଗ

ଗୋ ଜେମାଦେଇ ! କ ଶୁଣିମ ଶୁଣ ମନ ଦେଇ ଗୋ (ଘୋଷା)

ଯାହା ଜରେ ନନ୍ଦଗୃହ ଗୋ   ପୋଥିହାଣ୍ଡାକର ପାଠ ଗୋ
ଭଲ ଯଶୋବନ୍ତୀ ଜଞ୍ଜାଳ ସହନ୍ତି ନ ପାରି ଜରି ଆକଟ ଗୋ ।

ହାଟ-ବାଟ-ଘାଟ—ଜଗା ଗୋ,   ହଟିଆ ଲବଣୀମଗା,
ଯମୁନା ନଈରେ ନାବକେଳି କରି ଧନେ ଦେଇଥିଲୁ ଦଗା ଗୋ ।

ଛଇଳ ନାଗର ହରି ଗୋ,   କରେ କେତେ ହରି ଜୁରି,
ଗୋ-ଦୋହନବେଳେ, ଲୁଚ ରହ ହେଲେ ଫିଙ୍ଗାଇ ଦିଏ ବାଛୁରୀ ଗୋ ।

କଅଁଳାଷ୍ଟ ଅଟିଦନ୍ତ ଗୋ,   କେତେ ରସ ଜାଣେ କାହ୍ନୁ
ଗୃହକର୍ମଛଳେ ପାସୋରି ବସିଲେ ତାକଥା ନ ଯାଏ ମନୁ ଗୋ ।

ବନମାଳୀ ରସେ କହ ଗୋ,   କାଳିଆ କଳଙ୍କ ସେହ,
ତାହା ସଙ୍ଗେ ଯେହ୍ନୁ ପୀରତି କରିବ ମରିବ ଜହର ଖାଇ ଗୋ ।



# ସଖୀଶିକ୍ଷା

## ନବାନୁରାଗ

ରାଗ—ଝପା, ତାଳ—ଖେମଟା, ଝୁଲ୍ଲ,

କୃଷ୍ଣନାଁ ଶିଖିଛୁ ନାଁ ।
ପୋଡ଼ି ଦେବଟି ତୋ ପ୍ରୀତି-ସୁନାଁ ।
ହେ ଦରହାସି ! ତୁ ନଜର ଫେରାଇ
କଦର କରି ତାଠାରୁ ଯେନାଁ । ଘୋଷା ।

ଜାଣୁ କି ନା ପୂତନା ଦାସୀ, କ୍ଷୀରପାନେ ଦେଇଛୁ ନାଶି,
ଶିଶୁଟିଦିନରୁ ସେ ବଡ଼ ସାହସୀ ଛନ୍ଦାଚରଣିଆ ବୃନ୍ଦାବନାଁ ।

ବଂଶୀସ୍ୱରେ ନାମ ଉଚ୍ଚାରି, ଦଂଶି ଓଷ୍ଠ କସ ବଗୃରି
ବଂଶୀ ଜାପମୂଳେ କି ମନ୍ତ୍ର ପଢ଼ଇ ରସିକ-ରତନ ରାଜଧାନାଁ ।

ନାଟ କରି ଓଗାଳେ ବାଟ ଘାଟଲଗା ସେ ନନ୍ଦଗୃହ,
ଘଟ ଧରି କଲେ ଯେତେହେଁ ଆକଟ କାହାକୁ ନ ମାନେ ସେ ଅମାନାଁ ।

ଜାଣଇ ସେ ମୋହଜାଲଗା ଟେକଲ ଦେଖି ଦିଅଇ ଦଗା
ତା ପାଲରେ ଜୁଟି ତୋପରି କେତୋଟି ଗୋଟି ଗୋଟି ହୋଇଲେଣି ଗ୍ଳାନାଁ ।

*ରସେ ବନମାଳୀ ବଦନ୍ତି କଶୋରୀଙ୍କି ବୋଲନ୍ତି ଦୂତୀ,
ହାସ-ହାସ-ଭଙ୍ଗୀ ଚିହ୍ନାଁଣି ଛଟାରେ ବୁଲଇ ଜାଣେ ସେ ଗୋପଜନାଁ ।

---

*ପାଠାନ୍ତର:—ଦାସ ବନମାଳୀ ବଦତି

# ନୃସିଂହ ଅବତାର ଓ ହିରଣ୍ୟକଶିପୁ ବଧ

## ( ପୀତାମ୍ବର ଦାସଙ୍କ ନୃସିଂହ ପୁରାଣ )

ତାହା ଶୁଣି ହିରଣ୍ୟ ଯେ ମନେ କଲା ଚିନ୍ତା
କୋପ ବଢ଼ିଲା ପୁତ୍ରକୁ କଲାକ ଅହନ୍ତା ।
କିଛିହେଁ କଥା ଆଉ ନ ପଶେ ମନେ ତାର
ରମ୍ଭାବନେ ପଶି ଯେହ୍ନେ ନାଶଇ ସମୀର ।
ପୁତ୍ରର ମରଣ ସେହିରୂପେ ଚିନ୍ତା କଲା
ଗୁରୁଙ୍କ ବାକ୍ୟ ଉତ୍ତମ କରିଣ ଶୁଣିଲା ।
ଅରୁଣ ନେତ୍ରେ ରାଜା ଯେ ଚାହେଁ ପୁଣ ପୁଣି
ଶରୀର କମ୍ପେ ତାହାର ଉଲ୍‌କାପାତ ଜାଣି ।
ଗୁରୁପୁତ୍ରଙ୍କୁ ଚାହିଁଣ ବୋଇଲା ହିରଣ୍ୟ
ବେଗେ ପ୍ରହ୍ଲାଦକୁ ମୋର ପାଶକୁ ଯେ ଆଣ ।
ଶୁଣିଣ ଗୁରୁପୁତ୍ରେ ଯେ ପ୍ରହ୍ଲାଦକୁ ଘେନି
ରାଜାର ସମ୍ମୁଖରେ ନେଇ ଦେଲେକ ଧରାଇ ।
କୃତାଞ୍ଜଳି ହୋଇ କରି ପ୍ରହ୍ଲାଦ ବୀର
ପିତାର ପାଦେ ଯାଇଣ କଲା ନମସ୍କାର ।
ପାଦେ ପଡ଼ି ଶୋଇଣ ସେ ଉଠି ତତକାଳେ
ରହିଲା ଉଭା ହୋଇଣ ବାଳକଙ୍କ ମେଳେ ।
ପୁତ୍ରକୁ ଚାହିଁ ପୁଚ୍ଛଇ ରାଜା ମନ କୋପେ
ଫୁ ଫୁ କାର ହୋଇ ଯେହ୍ନେ ଗର୍ଜେ କାଳସର୍ପେ ।
ସ୍ୱଭାବେ ଦାରୁଣ ଅଟେ ଅସୁରର ଦେହ
କୋପ ହୋଇଣ ପୁଚ୍ଛଇ ପୁତ୍ରମୁଖ ଚାହିଁ ।
କି ରେ ପ୍ରହ୍ଲାଦ ତୁହି କେଡ଼େ ଦୁରାଚାର
ନ ଜାଣୁ କି କୋପିଲେ ମୁଁ କମ୍ପେ ତିନିପୁର ।

ହାସନ୍ତି ଉଦ୍ଧ୍ବ କରଣ ଦଶ ଦିଗପାଳ
ପୃଥୀ ଆପ ତେଜ ବାୟୁ କମ୍ପେ ଭୂମଣ୍ଡଳ ।
ତୁ ମୋତେ ଟିକିଏ ତ ନ କରୁ ଭୟଭୀତ
*କହିବା କଥା ମୋର ନ ଘେନୁଅଛୁ ମାତ୍ର ।
ମୋହୋ ବୀର୍ଯ୍ୟରେ ଜନ୍ମି ତୁ ହେଲୁ କୁଳାଙ୍ଗାର
ଆଜ ତୋତେ ପେଷିବି ମୁଁ କଷ୍ଟେ ଯମପୁର ।
ତାହାର ବାକ୍ୟ ଶୁଣି ଏ ରୂପେ ଅଛୁ ମାତ୍ର
ମୁଁ କେତେ କହିଲି ଲୁଝାଇଣ ପ୍ରତି ପ୍ରତି
ଶୁଣି ପ୍ରହଲ୍ଲାଦ କହେ ଯୋଡ଼ି ଦେନି ପାଣି
ବୋଇଲେକ ସାବଧାନେ ଶୁଣିମା ନୃମଣି ।
ଯାହା କହିଲଟି ମୋତେ ଉଚିତ ତୋହୋର
ସେ କଥାକୁ ପଦେ କହିବି ମୁଁ ନୃପବର ।
ନିର୍ମଳ ଚିତ୍ତେ କହୁଛି ଶୁଣ ତାହା ତୁହି
ଯାହାର ଜୀବ ବଳେ ମୁଁ ସମ ମଣିଥାଇ ।
ତୁମ୍ଭେ ଅମ୍ଭେ ଏ ସଂସାରେ ଯେତେ ଦେହଧାରୀ
ଜନପୁର ଯାକେ ଜୀବ ଯେତେ ଛନ୍ତି ପୂରି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯେତେ
ବ୍ରହ୍ମାଦି ଯେତେକ ଜୀବ ଶିବାଦି ସହିତେ ।
କରନ୍ତି ତାହାଙ୍କ ଚରଣରେ ସର୍ବେ ସେବା
ସେ ପ୍ରଭୁଙ୍କୁ କେମନ୍ତେ ମୁଁ ଛାଡ଼ିବି କହିବା ।
ସମସ୍ତ ପ୍ରାଣୀଙ୍କି ସେହି ଦ୍ୟନ୍ତି ଗତି ମୁକ୍ତି
ଯାହାର ଉଦରେ ପୂରିଛନ୍ତି ବ୍ରହ୍ମମୂର୍ତ୍ତି ।
ଭୁଞ୍ଜନ୍ତି ସମସ୍ତ ଜୀବ ହୃଦେ ଭୋଗ ବସି
କ୍ରୀଡ଼ା ଭାଙ୍ଗିଲେ ଚଳନ୍ତି ପୁଣି ବ୍ରହ୍ମରାଶି ।

---

ପାଠାନ୍ତର:—ସେନୁଅଛୁ ମତ ।

ଏ କଥା ଶୁଣି କୃଷ୍ଣଙ୍କୁ ବେଗେ ତାତ ଭଜ
ଅସୁର ସ୍ୱଭାବ ତୋର ବେଗେ ପରିତେଜ ।
ଆପଣା ଆତ୍ମାର ପ୍ରାୟେ ସବୁ ଆତ୍ମା ଦେଖ
ସମବୁଦ୍ଧି ଆଚରଣ ସବୁ ଘଟେ ରଖ ।
ଏ ଭାବ ଥିଲେ ହୃଦେ ନ ଥାଇ ମନ ରିପୁ
ମୁଁ କହେ କହିବ ପିତ ହିରଣ୍ୟକଶିପୁ ।
ଶ୍ରୀପାଦପଦ୍ମ ଭଜିବା ହୃଦେ କର ସ୍ଥିର
ହରିଙ୍କ ହୃଦରେ ଛାଡ଼ି ସର୍ବ କର୍ମ କର ।
ଆପଣ ସେ ତ୍ରିଲୋକକୁ ଏକା ଅଛ ଜିଣି
ତ୍ରିଭୁବନ ମଧ୍ୟେ ତୁହି ବୋଲଉ ନୃମଣି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ତୁ ଅଟୁ ମହାରାଜା
ସୁର ନର ଅସୁରେ କରନ୍ତି ତୋତେ ପୂଜା ।
ବ୍ରହ୍ମାଣ୍ଡରେ ଯେତେ ନାରୀ ପୁରୁଷ ଅଛନ୍ତି
ସବୁରି ହୃଦପଦ୍ମେ ସେ ପୂରି ରହିଛନ୍ତି ।
କାମ କ୍ରୋଧ ଆଦି ଯେଉଁ ଷଡ଼ରିପୁ ଛନ୍ତି
ମନକୁ ସେନା କରି ସେ ଭଣ୍ଡାର ଜୁରନ୍ତି ।
ଏ ଭଣ୍ଡାରେ ଦଶ ଇନ୍ଦ୍ର ଦଶ ଦିଗପାଳ
ଆତ୍ମା ନାଶିବାକୁ ହୋଇଅଛନ୍ତି ସେ କାଳ ।
ଏମାନଙ୍କୁ ତହୁଁ ଆଗୁଁ ଯେତ୍ନ ନ କରାର
ମୁହିଁ ଏକା ବୀର ବୋଲି ବଢ଼ାଉଛୁ କର ।
ଇନ୍ଦ୍ରଗଣକୁ ଜିଣି ଯେ ପାରୁଛି ଶରୀରେ
ସେ ଲୋକକୁ ବଡ଼ ବୋଲି ବେଳି ମଞ୍ଚପୁରେ ।
ପ୍ରହ୍ଲାଦ ବାକ୍ୟ ଶୁଣି ହିରଣ୍ୟ ଯେ ରାଜା
ମାରିବାରେ ତୋତେ ବୋଲି କଲାକ ତର୍ଜ୍ଜା ।
ମାଡ଼ ବସିଲାଣି ମୃତ୍ୟୁ ତୋ'ତେ ଆସି ଏବେ
ବାତ୍ତୁଳ ଲୋକ ପ୍ରାୟେ ତ କଥା କହୁ ଗର୍ବେ ।

ଉତ୍ତମ ଲୋକ ଯେବେ ରେ ଦୁଷ୍ଟ ବୁଦ୍ଧି କରେ
ମୂର୍ଖ ହେଲା ବୋଲିଣ ସେ ଜାଣିବ ସଂସାରେ ।
ଦୁଷ୍ଟ ଲୋକ ଯେବେହି ସୁବୁଦ୍ଧି କଥା କହେ
ମୂର୍ଖ ତାକୁ ହେଲା ବୋଲି ଜାଣି ନିସନ୍ଦେହେ ।
ଏ ଜନ୍ମରେ ଭାଗ୍ୟ ଆଉ ନାହିଁ ରେ ତୋହୋର
ମୋର ବୀର୍ଯ୍ୟେ ଜନ୍ମି ତୁହି ନୋହିଲୁ ଅସୁର ।
ମୋର ବୁଦ୍ଧିପ୍ରାୟେ ତୋର ବୁଦ୍ଧି ଯେବେ ହୋନ୍ତା
ଏ ଭଷା କାହିଁପାଇଁ ତୋ ତୁଣ୍ଡୁ ବାହାରନ୍ତା ।
ମୋର ଏ ପୃଥ୍ୱୀଯାକରେ ହୁଅନ୍ତି ଭୂ ରାଜା
ଦଶଦଗପାଳେ ଆସି କରୁଥାନ୍ତି ପୂଜା ।
ପରବୁଦ୍ଧି ଶିଖିଣ ତୁ ମୋର ବାକ୍ୟ ଲଙ୍ଘୁ
ନୀରସ ବୋଲିଣ ମୋତେ ମନରେ ତୁ ହେଜୁ ।
ମୋଠାରୁ ଈଶ୍ୱର କେହି ଅଛି ଯେବେ ଭିନ୍ନେ
ତାହାକୁ ବେଗେ ଆଣ ତୁ ଦେଖିବି ନୟନେ ।
ତୁହି ଯେବେ ବୋଲୁଅଛୁ ଗୋବିନ୍ଦ ନୃହରି
ସଂସାରେ ଦୃଶ୍ୟେ ଅଦୃଶ୍ୟେ ରହିଛନ୍ତି ପୂରି ।
ସେ ହରି ତୋତେ ଯେବେ ରେ ହୋଇଛି ସପକ୍ଷ
ତାହାକୁ ଆଜ ମୋତେ ରେ ଦେଖାଅ ପ୍ରତ୍ୟକ୍ଷ ।
ସେ ହରି ଯେବେ ରେ ସର୍ବଘଟେ ଅଛି ପୂରି
ଏ ସ୍ତମ୍ଭମଧ୍ୟେ କାହିଁ ନ ଦିଶେ ନରହରି ।
ତୁ ଯେବେ ବୋଲୁଅଛୁ ସେ ହରି ମୋର ସଖା
ପ୍ରତ୍ୟକ୍ଷେ ତୁ ତେବେ ମୋତେ ସ୍ତମ୍ଭମଧ୍ୟେ ଦେଖା ।
ନୋହିଲେ ଆଜ ତୋହୋର ଛେଦିବି ମୁଁ ଶିର
କି ରୂପେ ସଂସାରେ ତୋତେ ରଖେ ଚକ୍ରଧର ।
ହିରଣ୍ୟାସୁର ମୁଖରୁ ଶୁଣି ଏ ବଚନ
ଭକ୍ତରେ ଯେ ପ୍ରହ୍ଲାଦ ସ୍ମରେ ଭଗବାନ ।

ବୁଝିଲେ ତ ପ୍ରହଲ୍ଲାଦ ଅଟେ ବିଷ୍ଣୁ ଦାସ
ଗୃହଁନ୍ତି କୃଷ୍ଣଙ୍କୁ ଲକ୍ଷ୍ୟ କରି ଦଶଦିଶ ।
ଦେଖିଲେ ସ୍ତମ୍ଭ ମଧ୍ୟରେ ବିଜେ ନରହରି
ଶଙ୍ଖ-ଚକ୍ର-ଗଦା ପଦ୍ମ ହସ୍ତ କରେ ଧରି ।
ଚାହଁନ୍ତି ଦିଶନ୍ତି ସ୍ତମ୍ଭମଧ୍ୟେ ଚକ୍ରଧର
ଆନନ୍ଦେ ଡାକିଲେ ପ୍ରଭୁ ଶୁଣନ୍ତି ତତ୍ପର ।
ପ୍ରହ୍ଲାଦ ବୋଲନ୍ତି ଯେ ପିତା ମୁଖ ଚାହିଁ
ହେ ପିତା କହୁଛି ଶୁଣ ନମସ୍କାର ହୋଇ ।
ସ୍ତମ୍ଭର ମଧ୍ୟରେ ଦେଖ ବିଜେ ନରହରି
ସର୍ବ-ଅନ୍ତର୍ଯାମୀ ହୋଇଛନ୍ତି ବିଜେ କରି ।
ହିରଣ୍ୟାସୁର ସୁତର ବାକ୍ୟଗୋଟି ଶୁଣି
କୋପଭର ହୋଇ ଉଠିଲା ସେ ଶିର ଧୁଣି ।
ବୋଇଲା ସବୁରି ଆତ୍ମା ଅଟେ ଯେବେ ହରି
ମୋର ଦେହ ମଧ୍ୟେ ଅଛି କି ସେ ବିଜେ କରି ।
ଏ ସଂସାରେ ହଣାହଣି ହୋନ୍ତି ଯେତେ ଲୋକ
ଆତ୍ମାକୁ ଆତ୍ମା ହାଣନ୍ତେ ଛାଡ଼େ କିମ୍ପା ବେକ ।
ପ୍ରହ୍ଲାଦ ବୋଇଲା ମନ୍ଦ ପ୍ରକୃତିଙ୍କ ଯୋଗେ
ହେଉଥାନ୍ତି ମରାମରି ଆତ୍ମାକୁ ନ ଚିହ୍ନି ।
ହେ ପିତା ନ ହୁଅନ୍ତା ଯେବେ ତୋ ପ୍ରକୃତି ମନ୍ଦ
ଆତ୍ମାରାମକୁ ଚିହ୍ନିଣ ଭଜନ୍ତୁ ଗୋବିନ୍ଦ ।
ଆଦର ଶ୍ରଦ୍ଧାରେ ରାମକୃଷ୍ଣ ବୋଲି ବୋଲି
ଭଜନ କରୁଥାନ୍ତୁ ତୁ ପାଦପଦ୍ମ ଭାଳି ।
ପୁତ୍ର ବାକ୍ୟ ଶୁଣି ରାଜା କଲା ବହୁ କୋପ
ଆସନ୍ତୁଁ ଉଠି ଧଇଲା ମହା ବିଶ୍ୱରୂପ ।
ବିକଟାଳ ହୋଇଣ ସେ ଦେଲା ବେନି ଦୃଷ୍ଟି
ବ୍ରହ୍ମ ମିଶାଇ ଚୁପିଲାକ ଦନ୍ତପାଟି ।

ଧାଇଁଲା ଗାଙ୍ଗ ଖଡ୍ଗ ଧରି ନେବନି କରେ
ସ୍ତମ୍ଭପାଖେ ଯାଇ ଉଭା ହୋଇଲା କ୍ରୋଧରେ ।
ଦେଖିଲା ସ୍ତମ୍ଭମଧ୍ୟରେ ଦଶେ ନାରାୟଣ
କଳାମେଘେ ବିଜୁଳି ଝଟକେ ଯେସନ୍ତେ ଜାଣ ।
ଦୈତ୍ୟଙ୍କୁ ଦଶନ୍ତି ସେହି ରୂପେ ଚକ୍ରଧର
ପ୍ରହ୍ଲାଦକୁ ପ୍ରଶଂସା କଲାକ ଅସୁର ।
ବୋଇଲା ଭଲ ପୁତ୍ର ମୁଁ ଥିଲି ଜନ୍ମ କରି
ବୈରୀକୁ ମୋର ଦେଖାଇ ଦେଲୁ ଆଣି ଧରି ।
ଯେଉଁ ହରିନାମ ପଢୁଥିଲୁ ମୋର ପୁତ୍ର
ସେ ପୁତ୍ର ଯୋଗୁଁ ଦେଖିଲି ମୁହିଁ ପଦ୍ମନେତ୍ର ।
ଏତେ ବୋଲି ହିରଣ୍ୟ ଯେ କୋପେ ଗଲା ଉଠି
ପ୍ରହାର କଲାକା ସ୍ତମ୍ଭେ ନେଇ ବାମ ମୁଷ୍ଟି ।
ତକ୍ଷଣେ ନୃସିଂହ ପ୍ରଭୁ ଘୋର ନାଦ କରି
ସ୍ତମ୍ଭମଧ୍ୟରୁ ବାହାର ହେଲେ ରୂପ ଧରି ।
ମହାଘୋର ରଡ଼ି ଛାଡ଼ିଲେକ ଆନନ୍ଦେ
ଚଉଦ ବ୍ରହ୍ମାଣ୍ଡ କମ୍ପିଗଲା ସେ ଶବଦେ ।
ହର ବ୍ରହ୍ମା ଇନ୍ଦ୍ରଆଦି ଦଶ ଦିଗପାଳେ
ରଡ଼ି ଘାତରେ ଚମକି ପଡ଼ିଲେ ସକଳେ ।
ଯେସନେ ପୃଥିବୀ କମ୍ପେ ପଡ଼ି ଘଡ଼ଘଡ଼ି
ସେରୂପେ ସ୍ତମ୍ଭେ ନୃସିଂହ ପ୍ରଭୁ ଛାଡ଼େ ରଡ଼ି ।
ରଡ଼ି ଛାଡ଼ି ସ୍ତମ୍ଭ ମଧ୍ୟେ ଅଦୃଶ୍ୟେ ରହନ୍ତେ
କେବେ ନ ଦେଖି ଧାଇଁଲା ଦୈତ୍ୟ କୋପଚିତ୍ତେ ।
କ୍ରୋଧେ ଯାଇଁ ଧଇଲାକ ପ୍ରହ୍ଲାଦର ବାଳ
ତାହା ଦେଖି ଭୟରେ କମ୍ପିଲେ ଦିଗପାଳ ।
ସହିତରେ ପୁତ୍ରର ବାଳ ଧରି କୋପେ ଗୃହିଁ
ବୋଇଲା ମାରିବା ଆଜ ତୋତେ କଷ୍ଟେ ମୁହିଁ ।

କାହିଁ ଅଛି ଦେଖାଅ ତୁ ବେଗେ ତୋର ହରି
ନୋହିଲେ ତ ଯମପୁରେ ପେଷିବି ମୁଁ ମାରି ।
ତାହା ଦେଖି ପ୍ରହ୍ଲାଦ ହୁଅନ୍ତେ ବିକଳ
ଜାଣିଲେ ଭକ୍ତର ବ୍ୟଥାଗୋଟି ଆଦିମୂଳ ।
ସ୍ତମ୍ଭର ଭିତରୁ ପ୍ରଭୁ ପ୍ରକାଶିଲେ ଆସି
ଅଦିତ୍ୟ ଉଦେ ଯେସନେ ପାଗ୍ବାର ଦଶି ।
ଅଦ୍ଭୁତେ ଯେ ସ୍ତମ୍ଭମଧ୍ୟୁଁ ଜାତ ଦେବରାଜ
ସାକ୍ଷାତେ ନୃସିଂହ ରୂପ ଧରି ଚତୁର୍ଭୁଜ ।
ସ୍ତମ୍ଭମଧ୍ୟୁଁ ଅବତରୁଁ ପ୍ରଭୁ ଆଦିମୂଳ
ଗୃହିଁ ହିରଣ୍ୟ ଛଡ଼ିଲା ପୁତ୍ରର ଯେ ବାଳ ।
ନୃସିଂହ ଛାମୁରେ ଯାଇ ମିଳନ୍ତେ ହିରଣ୍ୟ
ଦଗ୍ଧ କାଞ୍ଚନ ପରାୟେ ଦିଶେ ତନୁବର୍ଣ୍ଣ ।
କେଶରୀ ବଦନ ପ୍ରାୟେ ଦିଶେ ମୁଖପ୍ରଭା
ତପତ ହାଟକ ପ୍ରାୟେ ଶ୍ରୀଅଙ୍ଗର ଶୋଭା ।
ମୁରାସୁରକୁ ମାଇଲେ ଶ୍ରୀନୃସିଂହ ପ୍ରଭୁ
ପ୍ରହ୍ଲାଦ ପାଇଁ ପ୍ରକାଶ ହେଲେ ଆସି ସ୍ତମ୍ଭୁ ।
ହିରଣ୍ୟାସୁରକୁ ଭୟ ଦେଖାଇବା ପାଇଁ
ବିଶ୍ୱମୂରତି ଧଇଲେ ପ୍ରଭୁ ଭାବଗ୍ରାହୀ ।
ବିକଟାଳ ଦନ୍ତମାନ ପ୍ରକାଶଇ ପାଟି
କଣ୍ଟଲେ ନ ରହେ ତନୁ ଚଞ୍ଚଳ ଭ୍ରୂକୁଟି ।
ଅକାଶଯାକ ଘୋଟିଣ ଦିଶେ ଦେବ କର୍ଣ୍ଣ
ଗହ୍ବରପ୍ରାୟେ ଦିଶଇ କର୍ଣ୍ଣରନ୍ଧ୍ର ଜାଣ ।
ନାସିକାର ରନ୍ଧ୍ର ଦେବ ଦିଶେ ଅଗୋଚର
ଶ୍ରୀଅଙ୍ଗରେ ଓଷ୍ଠ ଲମ୍ବି ଦିଶେ ଭୟଙ୍କର ।
ହର-ଡମ୍ବରୁ ପରାୟେ ଅଣ୍ଟାର ଆକାର
ଆଜାନୁଲମ୍ବିତ ବାହୁ ସୁଦୀର୍ଘ ପୟର ।

ଶ୍ରୀଅଙ୍ଗରେ ଲୋମମାନ ବଜ୍ରପ୍ରାୟ ଦିଶେ
ବଢ଼ନ୍ତି ଆକାଶବୃକ୍ଷ ପ୍ରାୟ ଜଗଦୀଶେ ।
ସଂସାରଯାକ ପୂରିଣ ଦିଶେ ସେହି ଦେହ
ପ୍ରକାଶେ କର ଚରଣ ଆଦି କରବୂହ ।
ଯେତେକ ଅସୁର ଥିଲେ ହିରଣ୍ୟର ପାଶେ
ଭୟରେ ପଳାଇ ଲୁଚିଗଲେ ଦଶଦିଶେ ।
ଏକାନ୍ତେ ନୃସିଂହରୂପ ହିରଣ୍ୟ ଯେ ଦେଖି
କ୍ରୋଧେ ଗଦା ଧରି ଧାଏଁ ତରଟିଣ ଆଖି ।
ନୃସିଂହ ଉପରେ ପିଟିଲାକ ଗଦା ନେଇ
ବୋଇଲା ଭାଇକୁ ମୋର ମାଇଲୁରେ ତୁହି ।
ଅତହିଁ ବିକ୍ରମରୂପେ କହଇ ଅସୁର
ବ୍ୟର୍ଥରେ ମଲୁ ରେ ଏବେ ତୁହି ଚକ୍ରଧର ।
ବୋଇଲା ଭାଇକ ମୋର ମାରିଥିଲୁ ପରି
ଲୁଚି ଲୁଚି ମୋତେ ଏବେ କମ୍ପା ଦେଲୁ ଧରି ।
ନୃସିଂହ ବୋଇଲେ ଆଜ ବୁଝିବ ରେ ମୁହିଁ
ତୋର ଭାଇଠାରୁ ବଡ଼ ଅଟୁ କିରେ ତୁହି ।
ଦଶନଖେ ବିଦାରିଣ ଦେବି ତୋର ବୁକୁ
ମାରି ପେସି ଦେବି ତୋତେ ଭାଇର ଠାବକୁ ।
ଏତେ ବୋଲି ଦଇତକୁ ଧରି ନରହରି
ବୁକୁରେ ମାଡ଼ି ବସିଲେ ବଳେ ଦଇତ୍ୟାରି ।
ନୃସିଂହକୁ ଛିଆଣ୍ଡିଣ ପଳାନ୍ତେ ଦଇତ
ତକ୍ଷଣେ ଉଠିଣ ପ୍ରଭୁ ଧାଇଁଲେ ତୁରିତ ।
ଧରୁ ଧରୁ ହସ୍ତୁଁ ଖସିଗଲା ଦୈତ୍ୟ ବେଗେ
ଓଷ୍ଠ କାମୁଡ଼ି ଗୃହିଁଲା ପୁଣି ଦଶଦିଗେ ।
ଅସୁରକୁ ଯେ ଅସାଧ୍ୟ ଦେଖି ଦେବଗଣେ
ସ୍ତୁତି କରନ୍ତି ଶୂନ୍ୟରେ ଥାଇ ଜଣେ ଜଣେ ।

ବୋଲନ୍ତି ଆମ୍ଭଙ୍କୁ ମହାପ୍ରଭୁ ରକ୍ଷା କର
ହିରଣ୍ୟାସୁରକୁ ମାରି ସଂସାର ଉଦ୍ଧର ।
ଏଥୁ ଅନନ୍ତରେ ଦୈତ୍ୟ ଧାଏଁ କୋପ କରି
ଗଦା ପକାଇ ଖଡ୍‌ଗ କରେ ଦୃଢ଼େ ଧରି ।
ଅଣଗୃଣ ପବନର ପ୍ରାୟେ ଧ୍ୱନି କରେ
ଘୋର ଗର୍ଜନ କରି ସେ ମିଳିଲା ଆଗରେ ।
ଦୈତ୍ୟକୁ ଦେଖି ଗରୁଡ଼ପ୍ରାୟେ ହରି ଧାଇଁ
ଅସୁରକୁ ଧରି ଶୂନ୍ୟେ ଛେଚଦେଲେ ମହୀ ।
ସ୍ୱଭବରେ ଦୁର୍ଜୟ ତ ଅଟଇ ଅସୁର
ବଜ୍ରହୁଁ ଆଗ୍ଳ ତାହାର ଅଟଇ ଶରୀର ।
ଲେଉଟି ଉପରେ ମାଡ଼ି ବସି ନରହରି
ପକାଇଲେ ଭୂମିରେ ଉତ୍ତାନଶାୟୀ କରି ।
ଯେସନେ ଧରଇ ଧାଇଁ ମୂଷିକକୁ ସର୍ପ
ସେରୂପେ ମାଡ଼ି ବସିଲେ ହରି ଜଗତପ ।
ଯେସନେ ଗଜମୁଣ୍ଡକୁ କେଶରୀ ବିଦାରି
ମାଡ଼ିବସିଲେ ଅସୁରହୃଦେ ତେଜେ ହରି ।
ଦଶନଖେ ବିଦାରିଲେ ଅସୁରର ବୁକୁ
ପ୍ରାଣ ଛାଡ଼ି ହିରଣ୍ୟ ଯେ ଗଲା ବୈକୁଣ୍ଠକୁ ।
କୋପଭରେ ସେ ନୃସିଂହ ଗୃହିଁ ଦଶ ଦିଶେ
ମିଳିଲେ ହିରଣ୍ୟସୈନ୍ୟଯାକ ଚଉପାଶେ ।
ଚକ୍ର ପେଷି ସବୁଙ୍କୁ ହିଁ ଦେଲେ ପ୍ରଭୁ ଛେଦ
ମଣ୍ଡାପଡ଼ି ବହି ଗଲା ତହିଁ ରକ୍ତ ନଦୀ ।
ସର୍ବ ଅସୁରେ ପଡ଼ିଲେ ମରି ମହୀତଳେ
ଊର୍ଦ୍ଧ୍ୱମୁଖେ ଗୃହାନ୍ତେ ଯେ ପୁଣି କୋପାନଳେ ।
ଗଗନରୁ ଦେବତାଏ ପଳାଇଲେ ତ୍ରାସେ
ଅଷ୍ଟ ଦିଗପାଳେ କେହି ନ ରହିଲେ ପାଶେ ।

ଅସୁର ଗୋଟାଏ କରି ନ ରଖିଲେ ହରି
ବାତଚକ୍ରେ ବୁଲାଇଣ ଦେଲେ ସବୁ ମାରି ।
ଅବଶେଷ୍ଟଥିବା ଅସୁରେ ସର୍ବେ ପଳାଇଲେ
ଶସ୍ତ୍ରଧାରୀ ହୋଇ ତହିଁ ଏକ ନ ରହିଲେ ।
ହିରଣ୍ୟ ଅସୁରକୁ ଯେ ସଂହାରି ନୃହରି
ଅସୁରର ସିଂହାସନେ ଯାଇ ବିଜେ କରି ।
ନନ୍ଦନବନରୁଁ ଦେବତାମାନେ ପୁଷ୍ପ ତୋଳି
ମଙ୍ଗଳସ୍ୱରେ ଗାବନ୍ତି ଗୀତ ଆଗେ ମିଳି ।
ତତ୍‌କ୍ଷଣେ ସ୍ୱର୍ଗରୁଁ ମିଳିଲେ ଆସି ଦେବନାରୀ
ଆନନ୍ଦ ହୋଇ କୁସୁମ ବୃଷ୍ଟି ଶିରେ କରି ।
ଗଗନରୁଁ ମିଳିଲେ ଆସି ସର୍ବ ଦିଗପାଳେ
ଦୁନ୍ଦୁଭି ବାଦ୍ୟ ବଜାଇ ନାଚ କୁତୂହଳେ ।
ହରଷ ହୋଇଣ ସର୍ବେ ନୃତ୍ୟ ଗୀତ କରି
ଆନନ୍ଦରେ ହୁଳହୁଳି ଦିଅନ୍ତି ଅପସରୀ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ଋଷିଗଣ ମେଳେ
ସମସ୍ତେ ସ୍ତୁତି କରନ୍ତି ପ୍ରଭୁ ଆଦିମୂଳେ ।
ଚଉଦ ଭୁବନେ ପୂରିଥିଲେ ଯେତେ ଜନ
ସମସ୍ତେ କରନ୍ତି ନୃସିଂହଙ୍କୁ ଧନ୍ୟ ଧନ୍ୟ ।
ବ୍ରହ୍ମା ଆସି ନୃସିଂହଙ୍କ ମୁଖକୁ ଅନାଇ
କରନ୍ତି କେତେ ଯେ ସ୍ତୁତି ପାଦତଳେ ଶୋଇ ।
ବ୍ରହ୍ମା ରୁଦ୍ର ଇନ୍ଦ୍ରାଦି ତେତିଶ କୋଟି ଦେବ
ଶ୍ରୀମହାଲକ୍ଷ୍ମୀ ସହିତେ ଋଷିଗଣ ସର୍ବ ।
ଯକ୍ଷ ରକ୍ଷ ଗନ୍ଧର୍ବ ଯେ ପିତୃଗଣ ଆଦି
ସମସ୍ତେ ଶ୍ରୀନୃସିଂହଙ୍କ ପଦତଳେ ବନ୍ଦି ।
ସମସ୍ତେ ତ ମନେ ମନେ କରନ୍ତି ଯେ ସ୍ତୁତି
ତାହାକୁ ନୃସିଂହ ସ୍ୱାମୀ ସମସ୍ୟା ନ ଦିଅନ୍ତି ।

ପରମ ଦୟାଳୁ ଜାଣ ପ୍ରଭୁ ନରସିଂହ
ଭକ୍ତ ପାଇଁ ଅବତାର ହେଲେ ବହୁ ଅଙ୍ଗ
ପ୍ରହ୍ଲାଦ ମୁଖରୁ ଯେ ସମସ୍ୟା ନ ଶୁଣି
କାହାକୁ କହିଲ ନ ନହ ମୌନ ଚକ୍ରପାଣି ।

---

# କେଶବ ରାମାୟଣ

## ବନ୍ଦସ୍ଥ୍ବଂଶ ଛାନ୍ଦ

### ରାଗ—ଘଣ୍ଟାରବ

ସୀତା— ଜାନକୀ ନାଥଙ୍କୁ କୃହନ୍ତି ଯେ,
କୋମଳ ବଚନ କହି ।
ଆଜ ହେବ ପରା ଅବନୀସାଇଁ ହେ,
ରଘୁନନ୍ଦନ ! ଶ୍ରୀମୁଖେ ହରଷ ନାହିଁ ହେ ।

ରାମ— ରାଘବ ବୋଲନ୍ତି ଧୀରେ ଗୋ
ସଖି ଜାଣି ନାହିଁ କରେ ।
ଭରତ ନୃପତି ହେବେ ରାଜ୍ୟରେ ଗୋ,
ରାମାରଞ୍ଜନ ! ମୁହିଁ ଯିବି ବନ ଘୋରେ ଗୋ ।

ସୀତା— କି କହ କୋଦଣ୍ଡଧର ହେ
ଶିରେ ତାଙ୍କୁ ପଥର
ବଜ୍ରରୁ କଠିନ ହୃଦ କାହାର ହେ,
ରଘୁନନ୍ଦନ ! ଏ ବୁଦ୍ଧି କଲା ବାହାର ହେ ।

ରାମ— ଶୁଣ ସୀତା ଇପସିତ ଗୋ,
ରାଜା କରିବାକୁ ମୃତ ।
ପୂର୍ବେ ମାଗି ଥିଲେ କୈକେୟୀ ମାତ ଗୋ,
ରାମାରଞ୍ଜନ ! ପିତାଙ୍କୁ କରାଇ ସତ୍ୟ ଗୋ ।

ସୀତା— ବଶିଷ୍ଠ ସୁମନ୍ତ ଥିଲେ ହେ
ତାଙ୍କ ର କେ ନ କହିଲେ ।
ମୁଖ ଦେଖିବାକୁ ଯୋଗ୍ୟ ନୋହିଲେ ହେ,
ରଘୁନନ୍ଦନ ! ଭଲ ସୁଖ ଭଙ୍ଗ କଲେ ।

ରାମ— ଚଉଦ ବରଷ କାଳ ଗୋ
ପିନ୍ଧିବ ବୃକ୍ଷବକଳ ।
ନିତି ବୁଲୁଥିବ ପର୍ବତମାଳ ଗୋ,
ରମ୍ୟାରତନ ! ଆହାର ମୋ ଫଳମୂଳ ।

ସୀତା— କୀର୍ତ୍ତି କଲେ ଦୁଃଖକାଳେ ହେ,
ଯେତେ ନାରୀ ସୁଧୀଜନେ ।
କିବୁଁ ଚିନ୍ତାମଣି ମୁଁ ଛାଡ଼ି ଦେବଲେ ହେ,
ରଘୁନନ୍ଦନ ! ଧର୍ମୀ କେହୁ ଧରିଲେ ।

ରାମ— ବିବେକୀ ବିବେକ କର ଗୋ
ସତ୍ୟ ତିନିପୁରେ ସାର ।
ଲଙ୍ଘି ଦେଲେ ହେବ ନରକେ ଘର ଗୋ,
ରମାରତନ ! ରଖି ଦେବେ କି ତୁମର ?

ସୀତା— ତୁମ୍ଭ ସଙ୍ଗେ ମୁହିଁ ଯିବି ହେ
ନାହିଁ କଲେ ନ ମାନିବି ।
ଛାଇ ପରି ପାଶେ ସେବା କରିବି ହେ,
ରଘୁନନ୍ଦନ ! ରୂପ ଶୋଭା ଦେଖୁଥିବି ।

ରାମ— ଏଁ ! ତୁ ଏହା ନ କହ ଗୋ,
ଶାଶୁପାଦେ ଚିତ୍ତ ଦିଅ,
ଜନନୀମାନଙ୍କ ମନ ତୁ ନିଅ ଗୋ,
ରମାରତନ ! ଶ୍ୱଶୁରଙ୍କୁ ସେବୁଥାଅ ।

ସୀତା— ଯେତେ ଋଷି ପୂର୍ବେ ହେଲେ ହେ
ଯେତେ ରାମାୟଣ କଲେ ।
ଜାଣ କି ଜନକୀ ସଙ୍ଗେ ନ ନେଲେ ହେ,
ରଘୁନନ୍ଦନ ! ରାମ ବନବାସ କଲେ ।

ରାମ— ହଂସତୂଳି ତୂଳୀରେ ଶୋଇ ରେ,
ନିଦ୍ରା ଯେ ଆସଇ ନାହିଁ ।
ଫଳମୂଳ ଖାଇ ତାଳଶେଯେ ଶୋଇ ରେ,
ରାମାରତନ ! କି କାଳ କାଟିବୁ ତୁହି ରେ ।

ସୀତା— ତୁମ୍ଭଙ୍କୁ ବିନା ମୋ ଆଶ ହେ,
ତୁମ୍ଭେ ମୋ ଲୋଭ-ମୁହାଁସ ।
ତୁମ୍ଭର ଯେମନ୍ତେ ଅରଣ୍ୟେ ବାସ ହେ,
ରଘୁନନ୍ଦନ ! ଘରେ ମୁଁ କରିବି କିସ ?

ରାମ— ଅତି ସୁକୁମାରୀ ତୁହି ଗୋ,
ଲବଣୀ-ପିତୁଳା-ଦେହି !
ଖରବେଳେ ବାଟ ଚାଲିବୁ କେହି ରେ,
ରାମାରତନ ! ତାତିଲା ପଥର ଭୁଇଁ ।

ସୀତା— ଅନ୍ତର କଲେ ଏ କାନ୍ତ ହେ,
ମୁଁ ତ ମରୁଥିବି କନ୍ଥ ।
ଅସର ହୋଇବ ବାସର ରାତି ହେ,
ରଘୁନନ୍ଦନ ! ଫାଟି ଯାଉଥିବ ଛାତି ।

ରାମ— ନ ପାରୁ ତୁ ଅଣକଟେ ଗୋ,
ନସତେ ବସିବୁ ପଥେ ।
ଜଳଜାତ କଲେ ଜଳଜନେତ୍ରେ ଗୋ,
ରାମାରତନ ! କି ଦୁଃଖ ନ ଦେବୁ ମୋତେ ।

ସୀତା— କହୁଛ କେତେ ଗୁଡର ହେ,
ତୁମ୍ଭେ କି ଏକା ଚତୁର ।
ତୁମ୍ଭଠାରୁ ପରା ମୁଁ ସୁକୁମାର ହେ ?
ରଘୁନନ୍ଦନ ! ରଖ ରଖ ଏ ବଗୁର ।

ରାମ— ଲଭିଲ୍ ବୟସ ତୋର ଗୋ,
ଲତା ତରୁ ବନ ଘୋର ।
ଲଙ୍ଘି ପାରିବୁ କି ଗିରି ଶିଖର ରେ,
ରମାରତନ ! ନୁହେଁ ଏ ଅଯୋଧ୍ୟାପୁର ।

ସୀତା— କେଉଁ ସଧକୁ ରହିବି ହେ,
କାହାକୁ ଦୁଃଖ କହିବି ।
କୈକେୟୀ-ଗୁମାନ ମୁଁ କି ସହିବି ହେ,
ରଘୁନନ୍ଦନ ! ପ୍ରାଣ ଯିବା ହରାଇବି ।

ରାମ— ଆପଣା ଛାଇକି ଡରୁ,
ଚମକ ଉଠୁରେ ଥରୁ ।
କେଉଁ ଦମ୍ଭ ପଣେ ଘରୁ ବାହାରୁ ରେ,
ରମାରତନ ! କାହିଁ ମୋ ସଂସାର ସାରୁ ।

ସୀତା— ନିଷ୍ଟ ଯେବେ ଛାଡ଼ି ଯିବ ହେ,
ଏହି ଯଶ ଅରଜିବ ।
ନକର ମୋର ଏ ଆଖର ହେବ ହେ;
ରଘୁନନ୍ଦନ ! ଆସି ଆଉ ନ ଦେଖିବ ।

ରାମ— କୁଳକୁ ଏ ଅପଖ୍ୟାତି ଗୋ,
ରାଜାଏ ନିନ୍ଦିବେ ନିତି ।
ବିଚାର କର ତୁ ବରଯୁବତୀ ରେ,
ରମାରତନ ! ଅମ୍ଭେ କି ଇତର ଜାତି ।

ସୀତା— ନ ଦେଖିଲେ ମୁହଁ ଦଣ୍ଡେ ହେ,
ପଡ଼ି ଥାଇ ଘୋର ଦଣ୍ଡେ ।
ଆଖି ରଖିଥାଇ ଆସିବା ଦାଣ୍ଡେ ହେ,
ରଘୁନନ୍ଦନ ! ପରାଣ ନ ଥାଏ ପିଣ୍ଡେ ।

ରାମ— ଚତୁର ଚନ୍ଦ୍ରମାମୁଖି ଗୋ,
ଚନ୍ଦ୍ର ସୂର୍ଯ୍ୟ ନାହିଁ ଦେଖି ।
ଚରଣକଣ୍ଟାରେ ହୋଇବୁ ଦୁଃଖୀ ରେ,
ରାମାରତନ ! ଶ୍ରୀଅଙ୍ଗ ଯିବ ତୋ ଶୁଖି
ସୀତା— ଅଛିଟି ନାହିଁ କି ଏବେ ହେ,
କାହାକୁ ସେ ପାଳ ନେବେ ।
ଯାହାର ବୋଇଲେ ତାହାର ତୁମ୍ଭେ ହେ,
ରଘୁନନ୍ଦନ ! ଔଷଧ ନ କଲେ ଲଭେ ।
ରାମ— ଦୁଷ୍ଟ ଦାଇତଙ୍କ ସ୍ଥାନ ଗୋ,
ବ୍ୟାଘ୍ର ଭଲ୍ଲୁକଙ୍କ ସ୍ୱନ ।
ପଡ଼ିଲେ କଷ୍ଟରେ ବୁଡ଼ିବ ଜ୍ଞାନ ରେ,
ରାମାରତନ ! ନ ଆସ ମୋ ବୋଲ ମାନ ରେ ।
ସୀତା— ଗଞ୍ଜାଳ ନ କର ମୋରେ ହେ,
ଅଛି କେ ତୁମ୍ଭ ବୋଲରେ ।
ରବିଙ୍କ ଉଦୟ ପଶ୍ଚିମେ ହେଲେ ହେ,
ରଘୁନନ୍ଦନ ! ମତେ କେ ରଖିବ ଭଲେ ।
ରାମ— ଜାଣି ନାରୀମଣିମନ ଯେ,
ଭଣିଲେ ଆସ ରେ ଧନ ।
ଲଭେ ହେବୁ ଯେବେ ପାଶରୁ ଭିନ୍ନ ରେ,
ରାମାରତନ ! ସହିବ କି ମୋର ମନ ।
ସତୀ ଶୁଣି ପଞ୍ଚଗିର ଯେ,
ଅଙ୍ଗରୁ ଅଳଙ୍କାର ।
ବେଶ ସାଜ ବାସ ପିନ୍ଧି ତାହାର ସେ,
ରାମାରତନ ! କେଶବ ସେବେ ପୟର ।

---

# ରାମକୃଷ୍ଣ ଢେଳକକଲ୍ଲୋଳ

( ତ୍ରିପୁରାର ଦାସ )

## ଚତୁର୍ଥ ଛାନ୍ଦ

ରାଗ—କେଦାର

ସାଧୁ ସାବଧାନବଶେ ଶୁଣ ଜନେ ସନ୍ତୁରଷେ
ଦୁରିତପଟଳ ତୁରିତ ଭଜିବ ପୂର୍ବ ତନୁ ଯିବ ରସେ ୧

ନିଶାନ୍ତରେ ସୁତ-ଜାତ ଶୁଭେ ଜାଣି ତାତ ମାତ
ମନେ କଉତୁକ ଅନେକ ସମ୍ବାଦ ଜନେ କଲେ ଯଶ ଖ୍ୟାତ । ୨ ।

ଯାହା ଅପୂର୍ବ ଯା ହାରୁ ତର୍କ ତୋଷିଲେ ତାହାରୁ
ବସନ ଭୂଷଣ ପ୍ରସନ୍ନରେ ଦେଇ ବଶ ନ କଲେ କାହାରୁ । ୩ ।

ଆନନ୍ଦେ ମଜ୍ଜନ ଜନ ସନ୍ତାପ ଶମନ ମନ
ଗାଇଲେ ଗାୟତ୍ରୀ ଧାଇଁଲେ ବ୍ରାହ୍ମଣେ ପାଇଲେ ଉଚିତ ଧନ ।୪ ।

ମହୋତ୍ସବ ସ୍ଥାନ ସ୍ଥାନ ଶୁଣି ତା ନ ଥିବ ଆନ
ବାଜିଲା ବାଜଣା ସାଜିଲା ସୁଖରୁ ଭଜିଲା ବଇରମାନ । ୫ ।

ଲାଗିବାରେ ଘରବୁହା କେହୁ ନ ରଖିଲେ ଉହା
ହାସରେ ଆବେଶ ଆଶରେ ଶଂକର ବାସରେ ସୁରଭିଦୁହାଁ । ୬ ।

ଯାହା ପ୍ରବର୍ତ୍ତିଲା ତହିଁ ତାହା କେ ପାରିବ କହି
ଲୁଟିଲେ ବିପକ୍ଷୀ ତୁଟିଲେ ପ୍ରମଦେ ଫୁଟିଲେ ପଦାର୍ଥ ବହି । ୭ ।

ମଣ୍ଡିଲେ ମନ୍ଦରଧାଡ଼ି ସ୍ୱର୍ଗରୁ ରଖିଲେ ବାଢ଼ି
ରଚନ ବୁଣାରେ ଯତନ ପନ୍ଥାରୁ ସତ ନ ବଳଇ ଛାଡ଼ି । ୮ ।

ଗୁମ୍ଫା ସାର ଝୁମ୍ପା ଫୁଲ ହୃଦରେ ଆସଇ ଭୁଲ
ଖୁରବା ଖୁରସେ ପୁଷ୍ପିକା ଅନାଇ ସୁରାଙ୍କ ନ ଯିବେ ଭୁଲ । ୯ ।

ବନ୍ଦଇ କେ ଚନ୍ଦ୍ରଚୂଡ଼େ   କହୁ କହୁ କଥା ମୂଢ଼େ
ନନ୍ଦନଉତ୍ସବ   ଚନ୍ଦନଚର୍ଚ୍ଚାରେ   ସ୍ୟନ୍ଦନ ଚକନ୍ଧ ରୂଢ଼େ ।୧୦।

ବଟଙ୍କ ଲଗିଲା ଗୃହେଁ   ନ ଥିବ ଆଉ ଏ କାହେଁ
ସେବାକୁ ଆଦର   ଦେବାକୁ ସବହେଁ   ନେବାକୁ ମିଳିଲେ ନାହିଁ ।୧୧।

ବନସ୍ତେ ବହୁତ କହ   ଯେ ଯାହାକୁ ଦେଲା ଓହେଁ
ଗୋଟିଏ ଧନ ସେ   କୋଟିଏ ବନ୍ଦିଲା   ଓଟିଏ ଆଣିଲେ ବନ୍ଧ ।୧୨।

ଏହ୍ନୁରୂପେ ଲୀଳା ଯେତେ   ଲକ୍ଷି ନୋହେ ଏତେତେତେ
ବାଣୀମନୋବୃତ୍ତି   ଜାଣିମ ନାହିଁ ତା   ଆଣିମ ମନୁଷ୍ୟ କେତେ ।୧୩।

ନୃପ ଅବରୋଧେ ପଶି   ଦେଖି ସୁତ ମୁଖଶଶୀ
ଶୟନସ୍ଥପମା   ଅୟନରେ ପଡ଼ି   ନୟନ ରହିଲା ରସି ।୧୪।

ଏକେ ତରୁର ମୂରତି   ଏଯୁଗେ ଦିଅନ୍ତ ରତି
ଆଦରେ ଗୃହେଁଲେ   ପାଦରେ ପୀରତି   ବାଦରେ ଖଟିବ ରତି ।୧୫।

ଧନ୍ୟ ଧନ୍ୟ ମଣ୍ଡସ୍ଥଳୀ   ଅଛି ତା ସୁକୃତ ଫଳ
ଲଳିତ-ତମାଳ-ଜଳଦ-କାନ୍ତିକି   ବଳି ତନୁ ଶୋଭା ଝଳ ।୧୬।

ନାହିଁ ଅଲକ୍ଷଣ ଲବେ   ଗୃହେଁ କେ ମୂର୍ଚ୍ଛିବ ଭବେ
ଲୋହିତ ଅଧରେ   ମୋହିତ କରନ୍ତୁ   ବୋହିତ ଏ ମହାର୍ଣ୍ଣବେ ।୧୭।

ବଧୂବୃତ   ବଧୂମୁଖେ   ମନକୁ ମଣ୍ଡାନ୍ତି ସୁଖେ
ନର୍ତ୍ତିତ ଅପାଙ୍ଗ   ଉପିତ ସ୍ତବରେ   ପିଣିତ କାମର ସୁଖେ ।୧୮।

ଚଣ୍ଡ ପ୍ରଭାକୁ କେ କହେ   ଖଣ୍ଡଶଶି ସାମ୍ୟ ବହେ
ଲେଖିଲା ଭ୍ରୂଲତା   ଦେଖିଲାରୁ ତୋଳେ   ଲେଖିଲା ପରାନ୍ତେ ରହେ ।୧୯।

ଭୂପତି ପୁଣ୍ୟ ଯୁଗରେ   ପ୍ରତ୍ୟକ୍ଷ ହେଲେ ଆଗରେ
ଅମଳ ଅମୂଲ୍ୟ   କମଳ ଚରଣ   ସମ୍ଭଳ ଭବମାର୍ଗରେ ।୨୦।

---

# ମନପ୍ରବୋଧ ଚଉତିଶା

## ( ଭକ୍ତ ଚରଣ )

କହଇ ମନ ଆରେ ମୋ ବୋଲ କର,
କଳା ଶ୍ରୀମୁଖ ଦ୍ୱାରେ ଦେଖିବା ଚାଲ ରେ ।
କେତେ ଦିନକୁ ମନ ବାନ୍ଧିଛୁ ଆଶ,
କି ଘେନି ଯିବୁ ତୋର ଛୁଟିଲେ ଘଟ ରେ ॥ ୧ ॥

ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରକାଟି,
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ ।
ଖଟପଲଙ୍କେ ମନ ଶେଯାଇ ଶୋଉ,
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହ ରେ ॥ ୨ ॥

ଗଲେଣି ତୋ ସଙ୍ଗରୁ ଯେତେକ ଜନ,
ଗଣ୍ଠିରେ ବାନ୍ଧି ନେଲେ କେ କେତେ ଧନ ରେ ।
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ,
ଗାଢ଼େ ମଣ୍ଡିଣ ନଶ୍ୱର ଧନ ଅର୍ଜିଲୁ ରେ ॥ ୩ ॥

ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ,
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ ।
ଘରଘରଣୀ ଦେହ କଳାଉଥିବେ,
ଘେନି ବନ୍ଧୁ କୁଟୁମ୍ବ ଶୁଙ୍ଖ ହୋଇବେ ରେ ॥ ୪ ॥

ଉଦ୍ଧାର ହେବୁ ଯେବେ ଭବ ସାଗରୁ,
ଉପାୟ କରି ଭଜ ଏବେ ଶ୍ରୀଗୁରୁ ରେ ।
ଉଣା ହେଉଛି ଦିନୁ ଦିନୁ ଆୟୁଷ,
ଆଉ ଏଣିକି ଅଛି କେତେ ବୟସ ରେ ॥ ୫ ॥

ଚନ୍ଦ୍ରପ୍ରତିମା ପ୍ରାୟେ ଦିଶୁ ସୁନ୍ଦର,
ଚିର ଭିତରେ ଦେଖ କି ନାରଖାର ରେ ।
ଚର୍ମ ବେଢ଼ିଛି ପୁନା ଚଉରାଶିକ,
ଚିତ୍ତ ତୁ ଦିଅ ନୀଳଗିରିବାସୀଙ୍କି ରେ ॥ ୬ ॥

ଛାର ଦେହକୁ ମନ କରିଛୁ ସଜ,
ଛନ୍ଦ କପଟ ତେଜି ଗୋବିନ୍ଦ ଭଜ ରେ ।
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା,
ଛଖଣ୍ଡି କାଠ ହେବ ତୋ ପାଇଁ ଲୋଡ଼ା ରେ ॥ ୭ ॥

ଯମ ଯେ ନ ଜାଣଇ ବାଳକ ଯୁବା,
ଜୀଇଁବୁ ବୋଲି ମନେ କରିଛୁ ଅବା ରେ ।
ଜଣେହେଁ ଏଥୁ କେହି ନାହିଁ ଅମର,
ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧାର ରେ ॥ ୮ ॥

ଝୋଲ ଗଙ୍ଗା ପାଛେଡ଼ା ପିବାକୁ ରସୁ,
ଝାଞ୍ଜ ସସାରେ ମନ ନ ବୁଝି ପଶୁ ରେ ।
ଝୁଣ୍ଟି ପଡ଼ିଲେ ଉଠି ପାରିବୁ ନାହିଁ,
ଝଡ଼ିଲ ପତ୍ର ବୃକ୍ଷେ ଲାଗିଛି କାହିଁ ରେ ॥ ୯ ॥

ନିଶି ଦିବସେ ଥନ୍ତୁ ନୋହୁ ନା ମନ,
ନିଦ୍ରାରେ ଦେଖୁଅଛୁ ଯଥା ସ୍ୱପନ ରେ ।
ନ ଯିବେ ସଙ୍ଗେ କେହି ଯିବୁ ତୁ ଏକା,
ନାମ-ମାତ୍ର ଅଟଇ ପଥକୁ ସଖା ରେ ॥ ୧୦ ॥

ଟାଣ କରୁଛୁ ମନ ସବୁ ମୋହୋର,
ଟଳି ପଡ଼ିଲେ କେହି ନୋହେ କାହାର ରେ ।
ଟେରି ଭିତରେ ଯେତେକ ଅପୂର୍ବ ନାରୀ,
ଟୋପ ଚଉରି ଅଛି ତୋ ଦେହେଁ ପୂରି ରେ ॥ ୧୧ ॥

ଠିକେ ମୁଁ କହୁଅଛୁ କର ମୋ କଥା,
ଠିକେ ତୋ ଦେହେଁ ଅଛୁ ଶୂନ୍ୟ ଦେବତା ରେ ।
ଠକ ଯିବୁଟି ଠିକ ମୁଣ୍ଡ ପଡ଼ିଲେ,
ଠିକେଣ ଗୁରୁସେବା କର ତୁ ଭଲେ ରେ ॥ ୧୨ ॥

ଡାକ କହୁଛୁ ମନ ଡାକ ଗୋବନ୍ଦ,
ଡର ଜଞ୍ଜାଳ ଯାଉ ତୋହର ହୃଦ ରେ ।
ଡେରିଥାନ୍ତି ଶ୍ରବଣ ଭକ୍ତ-ଡାକକୁ,
ଡଙ୍ଗା ଯେହ୍ନେ ଜଳରେ ଗୃହ୍ଣା ପଛକୁ ରେ ॥ ୧୩ ॥

ଢୋଲ ଯେସନେ ଢାଉଁ ଢାଉଁ ବାଜଇ,
ଢାଳେ ଢ଼ିଏଁ ଭିତରେ କିଛିହିଁ ନାହିଁ ରେ ।
ଢାଙ୍କି ରହିଛୁ ଦେହ ସବୁଟି ଭଳ,
ଢଳ ପଡ଼ିଲେ ସବୁ ହେବଟି ମିଛ ରେ ॥ ୧୪ ॥

ଏଣେ ତୁ ଦେଇଥିଲେ ତେଣେ ପାଇବୁ,
ଅଣଆୟୁଷବେଳେ କ ଘେନ ଯିବୁ ରେ ।
ଅଣନିଶ୍ୱାସୀ ହୋଇ ରହିବୁ ଦିନେ,
ଅନେକ ଦୁଃଖ ଦେବେ ଯମଦୂତନେ ରେ ॥ ୧୫ ॥

ତୁ ଯେ ବୋଲୁ ମୋହର ଅର୍ଜିଲୁ ଧନ,
ତୋ ଦେହ ନୋହେ ତୋର ଦେଖ ଏ ମାନ ରେ ।
ତୋହର ସଙ୍ଗେ ମନ ଗଲେଣି କେତେ,
ତୁ ମିଥ୍ୟା କଥାକୁ ତ ଯାଉ ପରତେ ରେ ॥ ୧୬ ॥

ଥିଲେ ଏ ସଂସାରରେ ଯେତେ ନୃପତି,
ଥିରି କରି କେ ଭୋଗ କଲା ଏ ପୃଥୀ ରେ ।
ଥୋଇଲୁ ଧନ ତୋର ଖଣ୍ଡ ଖାଇବେ,
ଥାନେ ତୋହୋର ଘର କରି ରହିବେ ରେ ॥ ୧୭ ॥

ଦେହେ ପୂରିଛି ତୋର ଅଶେଷ ରୋଗ
ଧନାଗୃହରେ ସିନା ଏ ସୁଖ ଭୋଗ ରେ ।
ଦାଣ୍ଡେହେଁ କେହି ତୋତେ ରଖିବ ନାହିଁ,
ଦଣ୍ଡ ଯେ ଥିବେ ଯମ ଡଗର ନେଇ ରେ ॥ ୮ ॥

ଧର୍ମ ଅଧର୍ମ କଥା ନ ଜାଣୁ ତୁହି,
ଧନ୍ଦି ହେଉଛୁ ଧନ ଅର୍ଜିବା ପାଇଁ ରେ ।
ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ,
ଧର୍ମରେ ଆତଯାତ ହେଉଛୁ ମହୀ ରେ ॥ ୯ ॥

ନିନ୍ଦିତ କର୍ମ କଲେ ନିନ୍ଦା ପାଇବୁ,
ନରକେ ପଡ଼ି କେତେ ଦୁଃଖ ସହିବୁ ରେ ।
ନର୍ମଦେ ମାସ ମୁଖେ ନ ବୋଲୁ ହରି,
ନାଶହେଉଛୁ କାମ୍ପା ଅଛୁ ଆବୋରି ରେ ॥ ୧୦ ॥

ପାହିଲା ନିଶି ଯେହ୍ନେ ରବି ଉଦୟ,
ପଦ୍ମଲୋଚନ ସବୁ ଦେହେ ଉଦୟ ରେ ।
ପ୍ରଭୁଙ୍କୁ ଅଗ୍ରେ କର ତରିବୁ ଯେବେ,
ପଦ୍ମପାଦରେ ଚିତ୍ତ ଦିଅ ତୁ ଏବେ ରେ ॥ ୧୨ ॥

ଫୁଲ ଯେସନେ ଫୁଲେ ଫୁଲେ ବାହାରେ,
ଫୁଲ ସମୀରେ ଆଉ ନ ଦିଶେ ତାରେ ରେ ।
ଫଳ ସଂସାରେ ଲୁଭ ହରି ଭଜନ,
ଫାଶ ଗଳାକୁ କାମ୍ପା କରୁଛୁ ଧନ ରେ ॥ ୧୧

ବେଳକୁ ବେଳ ତୋତେ ଦନ୍ତୁଛି ମୁହିଁ,
ଦାନ୍ଧିଣ ନେବ ଯମ କି ଦୁଃଖ ଦେଇ ରେ ।
ବଳକେ ଦା ନ ଥିବୁ ଅକୁଳ ହୋଇ,
ବେଳହୁଁ ଅଗ୍ରେ କର ଭଜ ଗୋସାଇଁ ରେ ॥ ୧୩ ॥

ଭେଳା ବୁଡ଼ିବ ହେଲା ଦଲେ କହୁଛି,
ଭଙ୍ଗା ନାବରେ କେବା ସିନ୍ଧୁ ତରୁଛି ରେ ।
ଭବକୁ ନାଶନ୍ତି ଯେ ଅଭୁବେ ଦୂର,
ଭକତ ଦାସ କହେ ଜୀବନ ଛର ରେ ॥ ୧୪ ॥

ମିଥ୍ୟା-ମାୟା ସଂସାର ନୋହେ କାହାର,
ମଲ୍ଲ ବୋଲାଣ ଦିନେ ପଡ଼ିବ ଦୂର ରେ ।
ମହୀ ଭିତରେ କେହି ଦେଖିବ ନାହିଁ,
ମଲ୍ଲ ବୋଲି କାହୁଛୁ ମନକୁ ଭୁହି ରେ ॥ ୧୫ ॥

ଜନମ ହେଲେ ପ୍ରାଣୀ ଅବଶ୍ୟ ମରୁ,
ଯଶ ରଖିବୁ ଯେବେ ଭଜ ଶ୍ରୀହରି ରେ ।
ଯମ ବାନ୍ଧିନେବଟି ହେବୁ ମେଲାଣି,
ଜଗନ୍ନାଥ ମହିମା ଏତିକି ଆଣି ରେ ॥ ୧୬ ॥

ରଙ୍ଗ ପସରି ସିନା ଭବ-ସାଗର,
ରଙ୍ଗ-ଭିତରେ ଅଛି କି ନାରଖାର ରେ ।
ରୂପ-ପ୍ରତିମାକୁ ତ ପରତେ ନ ଯା,
ରହିବେ ନାହିଁ କେହି ରାଜା ପରଜା ରେ ॥ ୧୭ ॥

ଲୋଚନେ ଦେଖି କର୍ଣ୍ଣେ ଶୁଣୁଛି ନିତି,
ଲୋଭ କରି ଅର୍ଜିଛୁ ଧନସମ୍ପତ୍ତି ରେ ।
ଲୋଭଟି ସବୁ ନାଶ କରାଇ ମନ,
ଲୋଡ଼ିଲେ ନ ପାଇବୁ ଆଉ ଜୀବନ ବୁର ॥ ୧୮ ॥

ବାଅର୍ଥେ ବହିଅଛୁ ଦୁର୍ଲଭ ଦେହ,
ବୟସ୍ଥାବସେ ଆଉ ନ ବଳା ସ୍ନେହ ରେ ।
ବୁଡ଼ିଯିବଟି ମୂଳ ଲାଭ ସବୁ,
ବେଳହୁଁ ଅନ୍ତେ କରି ଭଜ ମାଧବ ରେ ॥ ୧୯ ॥

ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ମନ,
ସଫଳେ ନ ପାଇବୁ ଆଉ ଜୀବନ ରେ ।
ଶ୍ରୀକୃଷ୍ଣ-ନାମ ଗୋଟି କର ଭଜନ,
ଶ୍ରୀକୃଷ୍ଣ ପଦ୍ମପାଦେ କର ତୁ ଧ୍ୟାନ ରେ ॥ ୩୮ ॥

ସନ୍ତୋଷ ଚିତ୍ତେ ତୁହି ହରିଙ୍କି ଭଜ,
ସଂସାରେ ପଡ଼ି ଆଉ ନ ପାଅ ଲାଜ ରେ ।
ସବୁଠି ମିଛ ହରି ନାମଟି ସତ,
ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ଚିତ୍ତ ରେ ॥ ୩୯ ॥

ସତ୍ୟ ମଣୁଛୁ ତୁହି ଭବସାଗର,
ସବୁ ଯାଉଛି ପରମାତ୍ମ ତୋହୋର ରେ ।
ସନ୍ତୋଷ ହୋଇ କୃଷ୍ଣେ ଭଜ ଶ୍ରୀହରି,
ଶୋକସାଗରୁ ଯେବେ ହୋଇବୁ ପାରି ରେ ॥ ୩୬ ॥

ହୁଡ଼ିଲେ ଯେତେ ଜନ ହରି ନାମରୁ,
ଯମ-ଗଣଙ୍କ ଗଲେ ବୁଡି ଡେଳରୁ ରେ ।
ଚୁକିଲେ ଦେହ ଆଉ ପାଇବୁ ନାହିଁ,
ହାଟ ବସାଇ ଥିବେ ତୋ ଦେହଗାଁରେ ॥ ୩୭ ॥

ଏମନ୍ତ ଦୁର୍ଲଭ ଦେହ ହୋଏ ଆସୁତ,
ଏମନ୍ତ ନ ଯିବ ନାମ ହୃଦରେ ଘୋଷ ରେ ।
ଛାର ଦେହକୁ ମନ ନ ଯା ବିଶ୍ୱାସ,
ଛାର ଦୁର୍ବୁଦ୍ଧି କହେ ଭକତ ଦାସ ରେ ॥ ୩୪ ॥

# ଯୁଗଳ-ଅନୁରାଗ-କଥନ

## (ଅଭିମନ୍ୟୁ ସାମନ୍ତସିଂହାର)

### ବିଦଗ୍ଧ ଚିନ୍ତାମଣି

ରାଗ—ଶୋକ କାମୋଦ

ଶ୍ରୀରାଧାବାଳୁଳୀ ପ୍ରେମରତ୍ନ ଭୁଲି ଘେନ ଚକ୍ଷୁର ଗ୍ରାହକମାନେ ।
କୃଷ୍ଣ ଅତି ସାନେ, ଦୂତିକାକୁ ବଦନେ ପଚାରନ୍ତି ଏରି ଧରି ଛନ୍ଦେ ।
ପ୍ରାଣବନ୍ଧୁ ହେ । ନନ୍ଦ ମୋ ଶୁଣୁକି ନର ଚଉ ।
ହସି ଦୂତୀ ଭଣେ ପ୍ରେମଜଳେ ଭୁସେ ବିହ୍ୱଳିତ ମତି ଦବାଗ୍ନିତ ।
କାଳିଆ କମଳି ଦେଖିଲେ କମଳନୟନରେ ହୋଏ ଜର ଜର ।
ଦେଖି ନବଘନ ତାର ଅପଘନେ ପୁଲକ ହୁଅଇ ଥର ଥର ।
ଘନ-ସୁନ୍ଦର ହେ ! ଯମୁନା ଯିବାକୁ ଡର ଡର ।
ଏ ଅତି ବଚନ ଚଞ୍ଚଳର ଚିତ୍ର ଲେଖି ଚୁମ୍ବ ଦିଏ ବାଉ ବାଉ ।
ଦେଖି ତମାଳକୁ ବଗୁର କୋଳକୁ ସଜ ହୋଇଁଥାଇ ବାହୁଯୁଗ ।
ଶ୍ୟାମସୁବାସରେ ଆଶମାନସରେ ନୀଳାବତୀସଙ୍ଗେ ଅନୁରାଗ ।
ରସଶେଖର ହେ ! ଭୂଷଣ ନୀଳେନ୍ଦ୍ର-ମଣିବର ।
ବର୍ଷ ସମାଦର ପିଠାଇ ନବର ଦେଖୁଥାଇ ଥୋଇ ହୃଦେ ତାର ।
ହେମ ମରକତ ଯୋଖି ଅଣାଇତ ପର ନେଇ ମୁଦି ରହେ କ୍ଷଣେ ।
ଦାଳିବୀ ଘଟନ ମନ୍ଦିରନାଟନା ଦେଖି ସୁଖୀ ହୋଏ ନଉଁ ଘୁଣେ ।
ଭାବବିନୋଦ ହେ ! କୃଷ୍ଣବର୍ଣ୍ଣ ଶେଯ ମାଡ଼େ ନିଦ ।
ଶ୍ରୀଅଙ୍ଗ ଭଳକୁ ଶୁଙ୍ଘିବା ବେଳକୁ ଚିତ୍ତରେ ଜାତ ହୁଅଇ ମୁଦ ।
କେ ଜାଣେ ଭାବନା ବୃକ୍ଷେ ସମ୍ଭାବନା ଦେଖେ କରେ ବୃନ୍ଦାବନ ଗଲେ ।
ବୋଲଇ ଆଲିଙ୍ଗ ଏ ବନଫୁଲକୁ ବୋଲି ଦିଅ ମୋର ହୃଦସ୍ଥଳେ ।
ନବନାଗର ହେ ! ରଙ୍ଗ କମଳରେ ସ୍ନେହ ତାର ।
ଲଗାଇ ହୃଦରେ ଅତି ଆନନ୍ଦରେ ଲଦୁଥାଇ ଶିରେ ବାର ବାର ।

ରତି ମଦାଳସା ସୁମନା ତୁଳସୀ ଗର୍ଭ କରି ଦେଉଥାଇ ନତି ।
କସ୍ତୁରୀ ପଦ୍ମକକରବୀ ଚମ୍ପକ ବୋଲି ସଖୀ ରହେ ମୁଖ ପୋତି ।
କାମମୋହନ ହେ ! କରୁଛ ନିତ ସାରୀ ପଠନ ।
ଦେଖିଲେ କେତକୀ ବୋଲେ ଏ ପାତକୀ ହେଲି କମ୍ପା ଭୃଙ୍ଗବିନୋଦନ ।

ସୁବଳପାଣିକି ଧରି ସେ ପୁଣି କି ମମତାରେ ପୁଚ୍ଛେ ଥିଲି କାହିଁ ।
ଗୋବିନ୍ଦ ପାଶରେ ଥିଲି ଏ ଦୁଃଖରେ ଉଲ୍ଲସି ଉଠଇ ବୃନ୍ଦମୁହିଁ ।
ଅହେ ଗିରିଧାରୀ ! ନନ୍ଦଗ୍ରାମ ଯାଏ ଯଉଁ ନାରୀ ।
ତାଙ୍କ ପଦ ଧରି ବୋଲେ ବିମ୍ବାଧରୀ ତୁମ୍ଭେ ମୋର ଗୁରୁଜନପରି ।

ଦେଖି ଗୁଞ୍ଜଫଳ ବୋଲଇ ସଫଳ ତୋହର ଅନୁରାଗ ଏବା ହେଲା ।
ଗୁଞ୍ଜୁ ଘଟାଇବ ତାହାର ପାଖକୁ ଆସଇ ସେ ଯେତେ ବିଷ୍ଟି ହେଲା ।
ଅହେ ଗୋପୀନାଥ ! ବଡ଼ୁରି ଏ ଜଉଁ ମନୋରଥ ।
ହସଇ ଭାଷଇ ସ୍ୱଗୁଣ ଦୋଷଇ ହା ଚୁମ୍ବିରେ ପୋତଇ ମାଥ ।

ଶୁଣି ଏ ଚରିତ ବୋଇଲେ ହରି ଏ ହା ହା ମରି ଲୁଚି ଯାଇ ବନ୍ଧୁ !
ତୋ ପ୍ରୀତିପଣରୁ ମୁଁ ନିଜ ପଣକୁ ବଡ଼ା ହେବ ସତେ କୃପାସିନ୍ଧୁ ।
ଅରେ ଗୁଣଗ୍ରାହୀ ! କି କି କରି ନ ପାରଇ ବାହି ।
ମୁଁ ଅତି ଦାରୁଣ ତବ ପ୍ରେମଋଣ କୋଟିକଳ୍ପେ ଶୁଝା ଯିବ ନାହିଁ ।

ତୋ ଗୁଣ ସୁମରି ଯେବେ ଯିବ ମରି ସଂସାରେ ପ୍ରଶଂସା ସାର ହେବ ।
ଦାସବଲ୍ଲରୀକି ପ୍ରଣୟସ୍ଥଳୀକି ବାନ୍ଧିବା-ତରେ ରହିଛି ଜୀବ ।
ଆରେ ଗୁଣବନ୍ତ ! ଏ ଛରକୁ ବଳାଇଲି ମନ୍ତ ।
ତୋତେ ବୃନ୍ଦମୁହିଁ କରିଗୁଣେ ମୁହିଁ ଯୋଗାଇବି ଏହା ଭାଳେ ନିତି ।

---

# ଗୋପାଳକୃଷ୍ଣ—ପଦ୍ୟାବଳୀ

(ରାଗ—ମୋହନା । ମିଶ୍ରରୂପ ତାଳ)

ଦୁଖୀଧନ ! ଚନ୍ଦ୍ରାନନ ରେ !
ତୋତେ ପଠିଆଇ ଦେବ କେହ୍ନ ବନ ରେ । ପଦ ।

ତୋ ଜନମରୁ ଆଜଯାଏ ମୁହିଁ,
କେହୁ ପାସୋରି ନିଜ ଜାଣି ନାହିଁ ।
କ୍ଷଣେ ଦୃଷ୍ଟିରୁ ଆଡ଼ ହେଲେ ଦଶ-
ଦିଶ ଦିଶୁଛି ତ ମୋତେ ଶୂନ୍ୟ ରେ । ୧ ।

ଅଛି ବିଷମ ଗୋଚାରଣ-ବୃତ୍ତି,
ସେ ତ ଦୁସହ ଦୁଖର ବସତି ।
ଧେନୁ ରଖିବାର ତୁ କି ଜାଣୁ ବାବୁ,
ଖାଇ ଜାଣି ନାହୁଁ କରେ ଅନ୍ନ ରେ । ୨ ।

ତୋତେ କେ ଶିଖାଇ ଦେଲା ଏ ବୁଦ୍ଧି,
କେତେ କହିଲେ ନ ହେଉ ପ୍ରବୋଧି ।
କାଖରୁ କ୍ଷଣେ ନ ଉଣ୍ଡାଉ ତଳକୁ,
ପଣନ୍ତ ନ ଛାଡୁ ନିଶିଦିନ ରେ । ୩ ।

ନବ-ନଳିନ ନୀରଦ-ସୁନ୍ଦର,
ନୟନର ପିତୁଳା ତୁ ମୋହର ।
କରମାଳ-କର ଲାଗି ଲାଞ୍ଛି ଯିବ,
ଶିରୀଷକୋମଳ ଅପଘନ ରେ । ୪ ।

ସେତେ ସୁଆଇଲେ କୋଳରୁ ତୋଳି,
ମା ମା ବୋଲି ଡାକୁ ଦଣ୍ଡ ପୋଠାଳି ।
ପଳାଇ ଗଲୁ ଚରି ହୋଇ ଆତୁର,
କାଲି କରୁଥିଲୁ ସ୍ତନ୍ୟ-ପାନ ରେ । ୫ ।

ଆରେ ନିରଜ—ଯାଜ-ପୁଣ୍ୟପୁଞ୍ଜ,
ପୁରେ ରହିଥାଅ ତୁ ନ ଅରଜ ।
ପୋଷା ନ ଗଲେ ଲକ୍ଷ ପଛେ ମାଗିବ,
କୋଟି ଇନ୍ଦ୍ରସମ୍ପତ୍ତି ତୋ ଦରଶନ ରେ । ୬ ।

ଆଣି ନନ୍ଦନକୁ ପାଣି ରୋହିଣୀ,
ବୋଲନ୍ତି ଶୁଣ ବାବୁ ଯଦୁମଣି ।
ଜନନୀ ଦୁଃଖ ଧରଣୀ ଧରୁ ନାହିଁ,
କି ଏଡ଼େ ନିଷ୍ଠୁର କଲୁ ମନ ରେ । ୭ ।

କହୁ ପୁଣ—ବତ୍ସଳା ଶ୍ରୀଯଶୋଦା,
ସ୍ତନ୍ୟ ଅଶ୍ରୁ ସ୍ୱେଦରେ ହେଲେ ଓଦା ।
ମା ଭଳି ଗୋପାଳକୃଷ୍ଣ କହେ ପୌର୍ଣ୍ଣ—
ମାଉସୀ କରିଦେବ ତ ସମାଧାନ ରେ । ୮ ।

———

## ଯଦୁମଣି—

### ରହସ୍ୟାବଳୀ ମଧ୍ୟରୁ.—

ହୟଗ୍ରୀବ ମହାପ୍ରଭୁପ୍ରତାପେ
'ଥୋଡ଼ା ନୁହେଁ, ଲୋଡ଼ା କରନ୍ତି ନୃପେ
ଭଲେ ଭଲ, ଖଣ୍ଡେ ଖଣ୍ଡ ଯେ,
ନବଦୂର୍ବାଦଳ- ଶ୍ୟାମଳ କୃପାରେ
ମୋ ନାମ ଉଜ୍ଜ୍ୱଳ-ଦଣ୍ଡ ଯେ।

× × × ×
× × × ×

ବୃନ୍ଦାବନେ ଜଗନ୍ନାଥ ନ ହେବ ଗୋସାଇଁ
ରଥ ବୋଲି ଅଣ୍ଡି ନେବେ ଶଗଡ଼େ ବସାଇ।
ଭୋଗ ବୋଲି ଖଣ୍ଡି ଦେବେ କଡ଼ୁଆ ମୁଆଁ
ଧୂପ ବୋଲି ମାଡ଼ ଦେବେ ନିଆଁ ଖୁଣ୍ଟା ଧୂଆଁ।

× × × ×
× × × ×

ବକ ଅଘ ଜର ବାଢ ନାଗନକୁ
ଗରୁଡ଼ ଗୋଦର ଧନଆଁ,
ଆଜ୍ଞା ଅବଜ୍ଞାରୁ ପ୍ରତିଜ୍ଞା କରୁଛୁ
ଗରୁଡ଼ ଗୋବରଧନଆଁ।

× × × ×
× × × ×

ଅଙ୍ଗ ଦେଶରୁ ଗଲି ଦର୍ପଣ ବଙ୍କା
କାମ ହାତରେ ଦେଲି ଗୋଦାନ ଟଙ୍କା

ଜାଡ଼ା ମଧୁରେ କଲ   ଖଣ୍ଡା ରନ୍ଧନ
କାମୁଡ଼ା ଘୋଡ଼ା ମୁଖେ   ଦେଲ ଚୁମ୍ବନ
ହେ ରାଜା ଙ୍କ ଦଲ !
ବସ୍ତ୍ର-ପ୍ରଚ୍ଛମାଳୁ   ଢଳେ ଥୋଇଲ ?
× × × ×
× × × ×

କାନ୍ତ କାନ୍ତ ଦେଖି   ମନେ ହେଲ ଭ୍ରାନ୍ତ
କେମନ୍ତେ କରିବ ଆହାର,
ଖଣ୍ଡପଡ଼ାନାମ   ଶୁଣେ ଉଚ୍ଚାରନ୍ତେ
ତକ୍ଷଣେ ହୋଇଲା ମଧୁର ।
ଚରଚୁ ବେହେସ୍   ଖରଚୁ ନ ହେଇ
ଫରଚୁ ହୋଇଣ ଗଲା,
ଉପବାସୀ ଉପ-   ବାସେ ରହୁ ରହୁ
ତେବେ ନିଶି ନ ପାହିଲା ।
× × × ×
× × × ×

ଛବିରେ ଜେ ଜଣେ ନବ ରସିକ !
କେ ପେଟ ପୋତେ ଧନୁଟରେ ବକ ?
ଜଳଠାରେ ହୃତ କାହାର ନଷ୍ଟ
ଭସ୍ମ ନାହିଁ ଜାର ଉରଗପ୍ରଷ୍ଟ
ବରୁଣ କହିବ
ରୂପ ପଦାର୍ଥ ଏକ ହୋଇଥିବ ।
× × × ×
× × × ×

———

# ସର୍ପ—କଣାଣ

## (୪ କବିସୂର୍ଯ୍ୟ)

ରାଗ—କାମୋଦୀ

ବାଧିଲୁ ଜାଣି କ୍ଷମା କର ନୋହିଲେ ରମାରମଣ ଦଣ୍ଡେ ଦିଅ ଠାଇ
ତୁମ୍ଭଙ୍କୁ ଜଗନ୍ନାଥ ଆଜି ମୋ ମନୋରଥ ଭରତି କରି ଦେବ ଗାଇ ହେ,
କୃପାନିଧି ।
କରୁଣା-ସିନ୍ଧୁ ବୋଲି କରି, କହନ୍ତି ବୁଧେ ତରି ମରି
କାଳସର୍ପ ଆପଣ, ଜବଲ-କର ପ୍ରାଣ-ପବନମାନଙ୍କୁ ସବୁରି ହେ,
କୃପାନିଧି । ୧ ।

ଜଳଧି ଅନ୍ତେ ନିଜ ଘର ଦେବାଧିରାଜ, ଲୁଡ଼ାଇ ଦେଇଛ ଆପଣ
ତୁମ୍ଭରି ସିନା ଶେଜ, ଆଶ୍ଚର୍ଯ୍ୟ ନୁହେ ଆନ, ଜନର ଘରଲୁଡ଼ାପଣ ହେ,
କୃପାନିଧି ।
ଭୁଜଙ୍ଗସାମ୍ୟ ଆମ୍ଭ ତୁଲେ, ବଡାଅ ବୋଲି ଆଜ୍ଞା ହେଲେ
ମୁଁ ନୁହେ ଘରଲୁଡ଼ା, ବଡାଇବାରୁ ଛଡ଼ା, ହୋଇଛୁ ବଡାଇବା ଭଲେ ହେ,
କୃପାନିଧି । ୨ ।

ତାହାରୁ ବୋଲ ଚକ୍ରୀ, ଚକ୍ର ଥିବାରୁ ଚକ୍ରୀ, ତୁମ୍ଭେ ତ ବୋଲାଅ ମଣ୍ଡଳେ
ବୋଲାଇ କୁଣ୍ଡଳୀ ସେ, ଆପଣ ତ ବିଶେଷେ ଭୂଷିତ ମକରକୁଣ୍ଡଳେ ହେ,
କୃପାନିଧି ।
ଅଦୃଶ୍ୟ ହେବାରୁ ତା ପାଦ, ତାହାକୁ ବୋଲି ଗୂଢ଼ପଦ,
ଆପଣା ଚରଣ ତ ବିରଞ୍ଚିଙ୍କୁ ଗୁପତ କାହିଁ ତା ଠାରୁ ତୁମ୍ଭ ଭେଦ ହେ,
କୃପାନିଧି । ୩ ।

ହେବ ବା ଅବଧାନେ, ତାହାକୁ ତ୍ରିଭୁବନେ, ବୋଲନ୍ତି ଦାମୋଦର ନରେ
ଏ ତ୍ରିପିଷ୍ଟପ ଯାକ ମଧ୍ୟେ ଗୋଟିଏ ଜୀବ ନାହିଁ କି ତୁମ୍ଭର ଉଦରେ ହେ,
କୃପାନିଧି ।
ଷବରେ ସେ ଅତି ଲମ୍ପଟ, ଷ-ବର ଷଦ୍ଧଙ୍ଗୀମ ଗ୍ରନ୍ଥ
ଷଧ୍ୱରେ ସେ ଲମ୍ପଟ, ଆପଣ ସେ ତ ପଟ ପଟଳେ ହୋଇଅଛ ସ୍ଫୁଟ ହେ,
କୃପାନିଧି । ୪ ।

କାନ ନ ଥାଇ ଆଖି ଭୁଜଙ୍ଗଠାରେ ଦେଖି ନୟନଶ୍ରବା ବୋଲି ତାକୁ
କହ କମଳାନନ, କାହିଁଛି ତୁମ୍ଭ କାନ, ସର୍ପ ବୋଇଲେ ଚଳିବାକୁ ହେ,
କୃପାନିଧି ।
ଫଣିଜାୟାକୁ ବୋଲି ଭୋଗ, ଥିବାରୁ ସେ ଦୁଇ ସଂଯୋଗ,
ତାହାକୁ ବୋଲି ଭୋଗୀ, ତୁମ୍ଭେ କି ନୁହ ଭୋଗୀ, ଜଳୁ ଯା ଅଛି
ମହାଭୋଗ ହେ,
କୃପାନିଧି । ୫ ।

ଯେବେ ଭୁଜଙ୍ଗ ନୁହ, କାଳୀୟଠାରେ ଦ୍ରୋହ କଲ କାହିଁକି ଏଡ଼େ କହ
କେତେ ନ ଥିଲେ ଗୋପେ, ତୁମ୍ଭେ କାହିଁକି କୋପେ, ତାହାକୁ ଦେଲ
ପ୍ରାଣେ ମାରି ହେ,
କୃପାନିଧି ।
ତାହାର ନାମେ ତୁମ୍ଭ ନାମ, ଅଦ୍ୟାପି ହୋଇଛି ଜନମ
ଯେବେ ସଗୋତ୍ର ଦ୍ରୋହ ନ ଥାନ୍ତା ନାଥ କହ କିମ୍ପାଇ ହୁଅନ୍ତା ଏ କ୍ରମ ହେ,
କୃପାନିଧି । ୬ ।

ଜାଣି ବାଳୁତ ଜାତି ଲବଣୀ ହାଣ୍ଡି ଭଙ୍ଗି, ଧରି ପାଶରେ ହୁଡ଼େ ହୁଡ଼
ଦୟା ନ କରି ଛଳେ, ଯାମଳ ତରୁ ତଳେ ଜନନୀ ନେଇ ଦେଲେ ଗଣ୍ଡ ହେ,
କୃପାନିଧି ।

ଯେତେକ ଥିଲ ଗର୍ଭେ ପଡ଼, ଜାର୍ଣ୍ଣ ହେବାକୁ ହେଲ ଭଡ଼
ଚନା ଜଗତଯାକେ ଜାଣିତେ ଅଛେ ଲୋକେ ସେ ତରୁ ଯିବାର ଉପୁଡ଼ ହେ,
କୃପାନିଧି । ୭ ।

ବ୍ରହ୍ମା-ଶଙ୍କର ମୁଖ୍ୟ ଦେବଙ୍କ ଠାରୁ ମୋକ୍ଷ ପ୍ରଧାନ ଧନ ଗୁଣ ହଲ
ପଛତଲୁ ନ ଯୋଷି-ବାରୁ କ୍ରମରେ ଅଶୀ-ଲକ୍ଷ ପର୍ଯ୍ୟନ୍ତ ଆଭ୍ରମିଲ ହେ,
କୃପାନିଧି ।
ଅସାବଧାନେ ଗଲେ ମିଳ, ଗୋଟିକୁ ଗିଳନ୍ତି କୁଣ୍ଡଳୀ,
ଅଗଣିତ ବ୍ରହ୍ମାଣ୍ଡବାଣ୍ଡିମଣ୍ଡଳୀ ତୁଣ୍ଡ ଦଳ ଆପଣ ଅଛ ଗିଳ ହେ,
କୃପାନିଧି । ୮ ।

ଅହ୍ନ ତ ବୋଲୁଇ ସେ, ଏକ ଅକ୍ଷର କୋପେ, 'ଅ'ହ୍ନନ୍ତ ବୋଲୁଅ ନିପୁଣ
କଂସ ପ୍ରମୁଖାସୁର ବିପକ୍ଷମାନଙ୍କର ଅହ୍ନନ୍ତ ହୋଇଛ ଆପଣ ହେ,
କୃପାନିଧି ।
ଜଗତେ ଧର ଯେବେ ଅହ୍ନ, ଘଟ ଗୋଟିକେ ନେଇ ଥୋଇ
ଅଛ ଯାବତ ଘଟେ, ଦର୍ଶାଅ ଯେ କପଟେ, ମୋର ହାଲୁଡ଼ୁ ଯିବ କାହିଁ ହେ,
କୃପାନିଧି । ୯ ।

---

# ଅମର୍ଷୀବାଣୀ

## (କବିବର ରାଧାନାଥ ରାୟ)

### ମହାଯାତ୍ରା

"ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେ କି ଆର୍ଯ୍ୟନାମ ଦାୟାଦ ଜଗତେ ?
ବିନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କର ଶୋଣିତ
ବହୁଛି କି, ଆହେ ଯୋଧେ, ତୁମ୍ଭ ଧମନୀରେ ?
ଧିକ ! ଧିକ ! ଶତଧିକ ! ଧିକ ଏ ମନ୍ତ୍ରଣା !
ଏ ହୀନ ମନ୍ତ୍ରଣା, ଭୀରୁ-ପାମର-ଉଚିତ,
ଉଚ୍ଚାରି ଯା କଲ ଶୂନ୍ୟେ ଅପବିତ୍ର ଆଜି
ନିଜ ମୁଖ, ଶ୍ରୋତା କର୍ଣ୍ଣ, ଆର୍ଯ୍ୟ ବଂଶଧରେ ।
ଭୀରୁତା ଯେ, ସେହି ସିନା ବୀରର ମରଣ,
ଭୀରୁଭାବ ବହି ତୁମ୍ଭେ ମୃତ ଏ ଜଗତେ,
ଲୋଡ଼ଇ କି କେହି କେବେ ମୃତର ମନ୍ତ୍ରଣା ?
ପଳାଇ ଏ ରଣସ୍ଥଳୁ ରହିବ କି ଜୀଇଁ
ଚିରଦିନ ଭବେ ? ଯେବେ ନାହିଁ ସେ ଦୁରାଶା
ନିଜ ମୁଖ, ପିତୃନାମ, ବୃଥା କଳଙ୍କିତ
କରିବ ଏ ରୂପେ କିମ୍ପା ପ୍ରାଣରଙ୍କ ମୂଢ଼େ ?
ହା ଧିକ ! ଏ ରଙ୍କପ୍ରାଣ ଆତଙ୍କେ ବଞ୍ଚାଇ
ଆଜ୍ଞ ମୃତ୍ୟୁପ୍ରଦ ରଣୁଁ, ଅରପି ଯବନେ
ନିଜର ଏ ସ୍ୱର୍ଣ୍ଣପ୍ରସୂ ଭୂମି ସନାତନୀ,
ଯାପିବ କି ଦିନ ଚିର ଅନଶନ ବ୍ରତେ ?
ଜଲାଲତାମୂଳେ ବସି ଚିର ଉପବାସୀ !
ଭୁଞ୍ଜାଡ଼ି ନରତେ ରହି ସୁରଧୂନୀ ତୀରେ ।

ଦିଗ୍‌ବିଜୟି ଆର୍ଯ୍ୟସିନ୍ଧୁ—ଊରସେ ଜନମ
ହୋଇ କି ଅକ୍ଷମ, ଆହା, ନିଜସ୍ୱ ରକ୍ଷଣେ ?
ହିମଗର୍ଜ୍ଜସ୍ୱିଳ ହିମ-ହିମାଦ୍ରି-ପ୍ରାଚୀରେ
ଦୁର୍ଗମ ଭାରତଦୁର୍ଗ କାହୁଁ ଲୁଣ୍ଠ ହାତେ,
କେ କହିବ ମୋତେ, କଅଁା ଅର୍ପିଲେ ବିଧାତା ?
ହା ଦୈବ ! ଜମ୍ବୁକ ପଶି ହର୍ଯ୍ୟକ୍ଷଗୁହାରେ,
ଗୋଇଠା ପ୍ରହାରି, ନେବ ତା ମୁଖୁଁ ଉଠାରି
ଗ୍ରାସ ତାର, ହର୍ଯ୍ୟକ୍ଷ ତା ସହିବ ମଉନେ !
ଏ ଲାଞ୍ଛନା ଥିଲା କି ଆର୍ଯ୍ୟର ଲଲାଟେ !
ଆତଙ୍କେ ଯେ ହର୍ଯ୍ୟକ୍ଷର ଭୈରବ ଗର୍ଜ୍ଜନେ
ପଶିଥିଲା ଏ ଜମ୍ବୁକ ନିଜ ବିଳେ ଯାଇ,
ସେହି ଦିଲ୍ଲୀପତି ପୃଥ୍ୱୀ ତୁମ୍ଭର ଅଗ୍ରଣୀ
ଏ ସଂଗ୍ରାମେ, ସେହି ଶତ୍ରୁ ଶୋଣିତ-ପିପାସୁ
କୃପାଣ ତାଙ୍କର ପୁଣି ଉଡ଼ଇ ସମୀରେ,
ଡରିଲ କି ଯୁଝିବାକୁ ଯବନ ସଙ୍ଗତେ ?
ଯବନ କାନନ—ମହାଦାବାନଳରୂପୀ
ଅଗ୍ରେ ପ୍ରମାଥୀ ପୃଥ୍ୱୀ ହସ୍ତିପୃଷ୍ଠତଳେ ?
ଏତେ ମାତ୍ର ପ୍ରାଣେ ଯେବେ, ତେଜି ରଣଭୂମି,
ସଖାଳ ସ୍ୱରୂପେ ତୁମ୍ଭ ରଙ୍କପ୍ରାଣ ନେଇ,
ବାନ୍ଧି ରଖ ଗୃହେ ଯାଇ ନାରୀବସ୍ତ୍ରାଞ୍ଚଳେ,
ହେ ନାରୀଏ, ଘୃଣାସ୍ପଦେ ନରଦେହଧାରୀ !
ବାହୁଡ଼ ସ୍ୱଗୃହେ ବେଗେ କଳଙ୍କିତ ମୁଖେ,
ଲାଙ୍ଗୁଳ ସଙ୍କୋଚି ଶ୍ୱାନ ପଳାଏ ଯେସନେ,
ଅଇଁଠା ଗୋଇଠା ଭୋଗୀ ସେହି ଶ୍ୱାନ ପରି
ପ୍ରସାଦାର୍ଥୀ ହୁଅ ଯାଇ ଯବନ ଦୁଆରେ !
ବାହୁଡ଼ ସ୍ୱଗୃହେ ବେଗେ ଖଡ୍ଗ ଛାଡ଼ି ଆଜ

ଭୂମ୍ପେ କି ହୋଇ ଯାଅ ମହାଭାର ଏବେ
ତୁମ୍ଭ ବଂଶ ହାତେ, ଜଡ଼ ପାଲେ ପରଣତେ,
ଯବନର ଭୋଗ ଲାଗି ଚଷ ନିର୍ଦ୍ଦେବେଗେ
ଯବନର ଛତ୍ରତଳେ ପୈତୃକ ଅବନୀ,
ମିଳି କିଅ ଏହି ତାଲ, କି ଲୋଡ଼ା ଏ ତାଲେ ?
ତୁମ୍ଭ ଯୋଗ୍ୟ ତାଲ ପୁନା ଚଷ୍କାର ଲୋକଙ୍କୁ !
ସେହି ତାଲେ ଆତ୍ମରକ୍ଷା ଆଚରିବ ଏବେ,
ବଳସର କ୍ଷେତ୍ର ନୁହେଁ ସଂଗ୍ରାମ ଅଗଣା,
ତପସ୍ୟାର କ୍ଷେତ୍ର ଏହି, ତପସ୍ୱିନାଂସିନି,
ବିପଦର ଯଜ୍ଞବେଦି, ଜୀବନ ଆହୁତି
ଦିଅନ୍ତି ଆହ୍ଲାଦେ ଯହିଁ ଯଶୋଲିପ୍ସୁ ବୀରେ;
ତୁମ୍ଭ ସହ୍ୟ ଶୀକାର ଦେଖା ଏ ଜନକରେ ।
ପାଇବାର ଲୋଭି ନାହିଁ ବିଧି କେଉଁ କାଳେ,
କି ସାହସେ କଲ ତୁମ୍ଭେ ଅପବିତ୍ର ଆସି
ଏ ତୀର୍ଥ, ଆମ୍ଭର ଏହି ଧର୍ମଯୁଦ୍ଧସ୍ଥଳୀ ?
ଆପଣାମେ ଏ କାଳିମା ବୋଳିଲ କେମନ୍ତେ ?
ଆସ ହେ ସଂଗ୍ରାମସିଂହ ଅଜାମିଳ ବୀରେ !
ଏ ମହା କଳଙ୍କ ଯାଇ ପ୍ରକ୍ଷାଳିବା ଘରେ
ରଣକ୍ଷେତ୍ରେ, ଧୂପଲୋହେ ଅବା ନଜଲୋହେ,
ବହିଂ ତୁମ୍ଭର ଶୂଳ ଉପୁରକ୍ତ ସ୍ୱାଦୁ
ବହୁଦିନ, ଦିଅ ତାଙ୍କୁ ଶୋଣିତ—ପାରଣା,
ନାବି ଦେହେ ତାଙ୍କ ମୂନ ମୁଣି ନିଅ ଶାଣି,
ଆସ ବେଗେ, ରଣସ୍ଥଳୀ ଝିଙ୍କି ମହୋଲ୍ଲାସେ
ଆଣିବା ବିଜୟଲକ୍ଷ୍ମୀ, ନ ପାଇଲେ ତାହା
ବୀରବେଶେ ଆଣିବା ତା କଳା ହାତ କଥା,
ଆମ୍ଭର ଦୁର୍ଭାଗ୍ୟ ଫଳେ ଆସିବ ଏ ଦେଶେ

ଯେବେ କି ଯବନି, ଆସୁ ଆମ୍ଭ ଶବ ମାଡ଼ି,
ଝଣ୍ଟୁ ଯା ଫଳବ ଜନ୍ମେ ରକ୍ଷ ଧର୍ମ ଧନ,
"ମନ୍ତ୍ରର ସାଧନ ଅବା ଶରୀର ପାତନ"
ଆର୍ଯ୍ୟର ଯା ସାର ଧର୍ମ, ପାଳ ଆର୍ଯ୍ୟବୀରେ !
ଆର୍ଯ୍ୟକୁଳଧ୍ୱଜ ପୃଥ୍ୱୀରାଜଙ୍କ ଗର୍ଜ୍ଜଣେ।'



# ଜୀବନ-ଚିନ୍ତା

## (ଭକ୍ତକବି ମଧୁସୂଦନ ରାଓ)

ରେ ଆତ୍ମନ୍ ! ନିଦ୍ରା ପରିହର
ଫେଡ଼ ଚିନ୍ତାର ଲୋଚନ    କର କର ନିରୀକ୍ଷଣ,
ନିଃଶବ୍ଦେ ଜୀବନ-ସ୍ରୋତ ଧାଉଁଛି କିପରି
ଭେଟିବାକୁ ମୃତ୍ୟୁ-ସିନ୍ଧୁ-କରାଳ-ଲହରୀ । ୧ ।

କି ବେଗରେ ଯାଉଅଛି ଚାଲି
ସେହି ସ୍ରୋତ ସଙ୍ଗେ ଭାସି    ଜୀବନର ସୁଖରାଶି,
ଯାହାର ସ୍ମରଣେ ନର ଶୋକଶ୍ୱାସ ଢାଳି
ଅତୀତକୁ ଉଦ୍‌ବୋଧଇ ବୃଥା ଭାଳି ଭାଳି । ୨ ।

ସ୍ୱପ୍ନସମ ନିଦ୍ରା ପାରାବାରେ
କ୍ଷଣକେ ହୁଅଇ ଲୀନ    ଗର୍ବ ଦମ୍ଭ ଅଭିମାନ
ସଂସାରର ଆଡ଼ମ୍ବର ବୁଦ୍‌ବୁଦ ଆକାରେ,
ସକଳ ଗ୍ରାସଇ କାଳ-ମୁଖ ନିର୍ବିଚାରେ । ୩

ସେ ସିନ୍ଧୁ-ତରଙ୍ଗ ମୁଖ ପ୍ରତି
ଆକୃଷ୍ଟ ଅଦୃଶ୍ୟ ଭାବେ    ହୋଉଅଛି ସର୍ବ ଜୀବେ,
କ୍ଷୁଦ୍ର ନିର୍ଝରିଣୀ, ମହାବେଗା ସ୍ରୋତସ୍ୱତୀ,
ସ୍ୱାଧୀନ ମନୁଷ୍ୟ, ମହାଯଶା ମହୀପତି । ୪ ।

ଭବସିନ୍ଧୁ ମାୟା ଶୈଳମୟ,
ସମସ୍ତ ଛଳନାପୂର୍ଣ୍ଣ,    ସେ ଶୈଳେ ସର୍ବଦା ଚୂର୍ଣ୍ଣ
ହୁଅଇ ଆଶାର ତରୀ, କାମନା ନିଚୟ
ବିଫଳ ସତତ, ଚିତ୍ତ ନୈରାଶ୍ୟ-ଆଳୟ । ୫ ।

ଜଗତର ଲୋଚନ-ନନ୍ଦନ
ଯୁବତୀର ରକ୍ତାଧର, ରମ୍ୟଜ୍ୟୋତି ନୟନର,
ସ୍ୱର୍ଣ୍ଣଘନ ସମବକ୍ଷ, ଗୁରୁ ପଦ୍ମାନନ,
ଇନ୍ଦ୍ରଧନୁ ଶୋଭାସମ ପଳାନ୍ତି ବହନ । ୬ ।

ଯୁବକର ତେଜ ବୀର୍ଯ୍ୟ ବଳ,
ପ୍ରୌଢ଼ର ଚତୁର ଜ୍ଞାନ, ସୁକୌଶଳ କାର୍ଯ୍ୟମାନ,
କାଳର ପ୍ରଭାବେ ଦିନେ ହୋଇବ ବିଫଳ,
କିସ ଏ ଜଗତେ କହ ସ୍ଥିର ଅଚଞ୍ଚଳ । ୭ ।

ଧନ ମାନ ଯଶ ଆଦି ଯାହା
ଭାଗ୍ୟଦେବୀ ପ୍ରସାଦରେ ଏ ଭବେ ଲଭନ୍ତି ନରେ,
କାଳଚକ୍ର ଆବର୍ତ୍ତରେ କି ବେଗରେ ଆହା !
ପଳାନ୍ତିରେ ଅନୁସରି ନିଜ ନିଜ ରାହା । ୮ ।

ବିମୋହନ ମନ୍ମଥ ବିଳାସ
ଟାଣେ ମନ ମାୟାଯନ୍ତ୍ରେ, ବାନ୍ଧିଏ କପଟ ମନ୍ତ୍ରେ,
କୌଶଳେ ଜନ୍ମାଇ ଚିତ୍ତେ କ୍ଷଣିକ ଉଲ୍ଲାସ
ବିଫୁଲ୍ଲ ବିପ୍ଳବକୁ କରିଏ ପ୍ରକାଶ । ୯ ।

ଆତ୍ମାରାଜ୍ୟେ ସେ ଭୀମ ବିପ୍ଳବେ
ଧର୍ମର ପୁଣ୍ୟ ରାଜତ୍ୱ, ଦୁଷ୍କାର ମହତ ତତ୍ତ୍ୱ
ହୁଏ ପରାହତ, ପାପ ଗର୍ଜଇ ଭୈରବେ,
ପଳାୟନ କରେ ଶାନ୍ତି ସେହି ଉପଦ୍ରବେ । ୧୦ ।

ମୁକୁଟ ମଣ୍ଡିତ ରାଜଶିର
ନୁହଇ ଶାନ୍ତି ଆସ୍ପଦ, ଆଶଙ୍କା ଭୟ ବିପଦ
ନିରନ୍ତର ରାଜମନ କରଇ ଅସ୍ଥିର !
ଆଜି ଯେ ରାଜେନ୍ଦ୍ର ସିନେ କାଲି ସେ ଫକୀର । ୧୧ ।

ଏ ସଂସାରେ ନାହିଁ ସୁଖ ଶାନ୍ତି,
ଅହଙ୍କାର ଦ୍ୱେଷ ରୋଷ ଲୋଭ ମୋହ ଅସନ୍ତୋଷ
ଦୁଷ୍ଟ ରିପୁକୁଳ ଘୋର ଅନର୍ଥ ଘଟାନ୍ତି
ପାପର ଘୂର୍ଣ୍ଣାବର୍ତ୍ତେ ନରେ ନିକ୍ଷେପନ୍ତି । ୧୨ ।

କାହିଁ ଶାନ୍ତି କାହିଁ ନିତ୍ୟସୁଖ
ଯାହା ଲଭିବାର ଲାଗି ଅଛୁ ଅବିରତ ଜାଗି
ଚାହିଁରହେ ଆଶାବାଦୀ ଉଜ୍ଜ୍ୱଳ ସମ୍ମୁଖ.
କାହିଁ ଗଲେ ପାସୋରିବ ମୃତ୍ୟୁ ପାପଦୁଃଖ । ୧୩ ।

ରେ ହୃଦୟ ! ନ ହୁଅ କାତର,
ସଂସାରର ବିଡ଼ମ୍ବନା ପାପ ସନ୍ତାପ ଯାତନା
ବିପଦ ଦୁର୍ଦ୍ଦିନତମ ଘୋର ଭୟଙ୍କର
କରେଣି ନିରାଶା ବଶେ ନ ହୁଅ ଜର୍ଜ୍ଜର । ୧୪ ।

ଧର ଧୈର୍ଯ୍ୟ ଘେନରେ ସାନ୍ତ୍ୱନା,
ଅଛି ସେହି ମହାଧନ, ସେ ମହା ସ୍ୱର୍ଗ-ରତନ,
ସେ ଅମୃତ ମହୌଷଧ, ଯାହାର କାମନା
ଆଶା, ଜାଗ୍ରତ ସଂଗତ, କରେ ଉଦ୍ଦୀପନା । ୧୫ ।

ସ୍ଥିର ହୁଅ ରେ ଚଞ୍ଚଳ ମନ,
ଘେନ ମହା-ତତ୍ତ୍ୱ-ଦୀକ୍ଷା, ଜୀବର ପରମ ଶିକ୍ଷା,
ତେବେବେଁ ଲଭିବୁ ସେହି ପ୍ରାଣାରାମ ଧନ,
ଅଖିଳ ହୃଦୟ କରେ ଯାର ଅନ୍ୱେଷଣ । ୧୬ ।

ଧୂଳିର ଏ ନର କଳେବର,
ଅହୋ ମାନବ ଜୀବନ କି ଅଦ୍ଭୁତ ଉଦ୍ଭାବନ !
ବିରାଜେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ,
କମଳ ଶୋଭଇ ଯଥା ପଙ୍କମୟ ସରେ । ୧୭ ।

ଏ ସଂସାର ଅନ୍ଧକାର ସ୍ଥାନ,
ଅନ୍ଧାରେ ହେଲେ ଜଡ଼ିତ    ନ ହୁଅଇ ବିକସିତ
ଜୀବାତ୍ମା କୁସୁମ ଏଥି, ହୁଏ ମ୍ରିୟମାଣ
ହରାଇଣ ଦିବ୍ୟ ଶୋଭା ପ୍ରେମଭକ୍ତି ଜ୍ଞାନ । ୧୮ ।

ଉଦାକରେ ନିରେଖି ଗଗନେ
ହର୍ଷେ ଫୁଟେ ପଦ୍ମଫୁଲ,    ତେସନେ ଆତ୍ମା ପ୍ରଫୁଲ୍ଲ
ଅନନ୍ତ ମଙ୍ଗଳାଳୟ ବିଭୁ ଦରଶନେ,
ପୁଣ୍ୟର ତପନ ଯେହୁ ପାପର ଭୁବନେ । ୧୯ ।

ଯହିଁ ଦେବେ ଭୁଞ୍ଜନ୍ତି ଅମୃତ
ବିଭୁ ପାଦପଦ୍ମ ପାଶେ,    ପୁଣ୍ୟ ଜ୍ୟୋତିର୍ମୟ ବାସେ,
ରୋଗ ପାପ ମୃତ୍ୟୁ ଆଦି ଯହିଁ ପରାଭୂତ,
ସେ ସୁଧାର ଲାଗି ଆତ୍ମା ସଦା ପିପାସିତ । ୨୦ ।

ଏ ପିପାସା ନୁହଇ ନିବାର
ଅସାର ସଂସାର ଜଳେ    ବିପୁଳ କୋଳାହଳେ
ନୋହେ ନିବାପିତ କେବେ, ଏକା ଧର୍ମବାରି
ଶମଇ ଏ ମହା-ଅଗ୍ନି ଅମୃତ ସଞ୍ଚାରି । ୨୧ ।

ତେବେ ଅରେ ଅସ୍ଥିର ହୃଦୟ,
ତ୍ୟଜ କୁତ୍ସିତ ବାସନା    କର ତାଙ୍କ ଆରାଧନା,
ଧର୍ମରାଜ ପ୍ରଭୁ ଯେହୁ ମଙ୍ଗଳ-ଆଳୟ,
ଅମୃତ-ଜୀବନ-ଦାତା ବ୍ରହ୍ମାଣ୍ଡ-ଆଶ୍ରୟ । ୨୨ ।

ପରିହର ପାପ ପ୍ରଲୋଭନ
ଉଜ୍ଜ୍ୱଳ କର ବିଶ୍ୱାସ,    ସ୍ୱାର୍ଥ ଅହଙ୍କାର ନାଶ,
କରରେ ହୃଦୟାକାଶ ନିର୍ମଳ ବନ୍ଧନ,
ତେବେ ରେ ଲଭିବୁ ଧର୍ମରସ ଆସ୍ୱାଦନ । ୨୩ ।

ପ୍ରୀତିମୟ ଜୀବନ-ରତନ
ଦେବେ ତୋତେ ପରମେଶ, ତାଙ୍କର ପବିତ୍ରାଦେଶ
ନିଃସ୍ୱାର୍ଥ ପବିତ୍ର ହୃଦେ ଭଜ ହେଉ ସାଧନ,
ଜଗତର ହିତ ଅର୍ଥେ ଉତ୍ସର୍ଗ ଜୀବନ । ୨୪ ।

ହେ ଈଶ୍ୱର ପତିତ-ତାରଣ
ପ୍ରାଣାଧିପ ନିରଞ୍ଜନ, ଭବ ବନ୍ଧ ବିନାଶନ,
ତୁମ୍ଭେ ପ୍ରଭୁ ସନ୍ତାପିତ-ପ୍ରାଣର ଚନ୍ଦନ,
ସଂସାର ବିଷାକ୍ତ-ନେତ୍ରେ ତୁମ୍ଭେ ହେ ଅଞ୍ଜନ । ୨୫ ।

ଅସ ନାଥ ଅଗତିର ଗତି
ତୁମ୍ଭ ବିନା ଏ ସଂସାରେ ମରଇ ମୁଁ ହାହାକାରେ,
ତାର ମୋତେ ମହାପ୍ରଭୁ ଦେଇଣ ସୁମତି,
ଅନନ୍ତ ଦୟା ତୁମ୍ଭର, ଅନନ୍ତ ଶକତି । ୨୬ ।



# ବୌଦ୍ଧାବତାର କାବ୍ୟ

## (୰ବ୍ୟାସକବି ଫକୀର ମୋହନ)

ବିଗତ ସନ୍ତାପ ଚିନ୍ତା କି ଭବ ଆବେଶେ
ସଞ୍ଚାରିତ ସୁପ୍ତୋତ୍‌ଥିତ ପରି ହୃଦଦେଶେ ।
ବିଶେଷେ ବୈରାଗ୍ୟ ଭାବ ହୁଏ ହୃଦଙ୍ଗମ,
ଜାଗିଲୀ ସଙ୍ଗୀତେ ବିଲଶାୟୀ ଭୁଜଙ୍ଗମ ।

ଅର୍ଦ୍ଧନିଦ୍ରା ଯୁବା, ଗୋପା ଅଚେତା ନିଦ୍ରାରେ,
ଯୁଗଳକାଞ୍ଚନ-ମୂର୍ତ୍ତି କୁସୁମ-ଶଯ୍ୟାରେ ।
ଅବଶ୍ୟ ସଫଳ ହେବ ବିଧାତା-ଲେଖନ,
ମାନବର ସାଧ ନାହିଁ କରିବ ମେଣ୍ଟନ ?

ଶୂନ୍ୟ କୁମ୍ଭ ଜଳମଗ୍ନ କଲେ ବିକ୍ରମରେ
ଛିଥିଲେ ଉଠେ ସେ ଭାସି ଦ୍ୱିଗୁଣ ବଳରେ ।
ମଣିଲେ ସିଦ୍ଧାର୍ଥ, ଗୀତ ବୋଲୁଛି କର୍ଣ୍ଣରେ,
ବୃଥା ବିମୋହିତ ଅଛି ଶମ୍ଭାନ ସୁଖରେ ।

ଜରା, ବ୍ୟାଧି, ଦୁଃଖ, ମୃତ୍ୟୁପୂର୍ଣ୍ଣ ଏ ଭୁବନ,
ଦାରୁଣ ଯନ୍ତ୍ରଣା ଭୁଞ୍ଜେ ଜୀବ ଅକିଞ୍ଚନ ।
ଅନଳେ ପତଙ୍ଗ ସମ ବୃଥା ଲାଳସାରେ
ମରେ ଜୀବ ନିତ୍ୟ, ମନେ ଭାଳେ ନାହିଁ ବାରେ ।

ନିଜ ମୁକ୍ତିମାର୍ଗ ! ଆହା ! ପୃଥ୍ୱୀ ରଙ୍ଗାଳୟ,
କରେ ନିତ୍ୟ ଜୀବ ଜନ୍ମ ମୃତ୍ୟୁ ଅଭିନୟ ।
ଅବିଶ୍ରାନ୍ତ ନଦୀସ୍ରୋତ ସମାନେ ଜୀବନ
ଧାବିତ ମରଣ-ସିନ୍ଧୁ-ଗର୍ଭେ ଅନୁକ୍ଷଣ ।

ଘୂର୍ଣ୍ଣିତ କୁସ୍ମଳଚକ୍ର ସମାନେ ମାନବ,
ପର୍ଯ୍ୟାୟରେ ଜନ୍ମ ମୃତ୍ୟୁ କରେ ଅନୁଭବ ।

ଅଜ୍ଞାନ-ତମସରେ ଘୋର ତୃଷ୍ଣାରେ ପୀଡ଼ିତ,
ନ ହେଲୁ ତଥାପି ଧିକ ଚେତନା କଳ୍ପିତ ।

ବ୍ୟାଧ-ଜାଲେ ବଦ୍ଧ ମୃଗ ସମାନେ ଜୀବନ
ଜନମ ମରଣେ ବଦ୍ଧ ମୋହେ ଅଚେତନ ।

ସୁଖ ଲୋଡ଼ ଦୁଃଖ ଭୁଞ୍ଜେ ଆପାତ ମଧୁର,
କାର୍ଯ୍ୟେ ଲିପ୍ତ ମୃଗତୃଷ୍ଣା ଦେଖି ତୃଷ୍ଣାତୁର ।

ଯୌବନ ଲାବଣ୍ୟ ଜରା କରଣ ହରଣ,
ପର୍ଯ୍ୟୁଷିତ ତରୁଚ୍ୟୁତ ସୁନ୍ଦର ସୁମନ ।

ସୌନ୍ଦର୍ଯ୍ୟ-ସାମର୍ଥ୍ୟ-ହାରୀ ଜରା କ୍ରମଶରେ,
ଦାବାଗ୍ନି କୁସୁମବନେ ଦହନରେ ସଞ୍ଚରେ ।

ପ୍ରାଣୁ ବଳି ପ୍ରିୟତର ଜ୍ଞାତିବନ୍ଧୁଗଣ,
ବଚ୍ଛିନ୍ନ ବିନଷ୍ଟ ହେଉଛନ୍ତି ଅନୁକ୍ଷଣ ।

ତାଲେ ଯେ ହୃଦୟେ ସୁଧା ପ୍ରେମର ଆଲୋକ,
ବଶେଷେ ସେ ଲୋକ ହୁଏ ଯନ୍ତ୍ରଣାଦାୟକ ।

ନଦୀସ୍ରୋତେ ଶୁଷ୍କତୃଣ ସମାନେ ମିଳନ,
ଜଗତରେ ତଥା ଜ୍ଞାତି ବନ୍ଧୁ ପରଜନ ।

ପ୍ରେମ ବୋଲ ପ୍ରୀତି ବୋଲ ଦୁଇ ଦିନ ପାଇଁ,
ମୃତ୍ୟୁ ଅନ୍ତେ ଛିନ୍ନ ଭିନ୍ନ, ଆଉ ଦେଖ କାହିଁ ?

ଜନ୍ମ, ଜରା, ମୃତ୍ୟୁ ତିନ ବେଢ଼ିଛନ୍ତି ପ୍ରାଣ,
ନାହିଁ କି ଉପାୟ କିଛି ଏଥୁଁ ପରିତ୍ରାଣ ?

ମାନବର ଭାଗ୍ୟଲିପି ଅନନ୍ତ ଯନ୍ତ୍ରଣା,
ଭୁଞ୍ଜିବେ କିପରି ଏହା କରିବି କଳନା ?

କରୁଣାନିଧାନ ହରି ସ୍ୱକୀୟ ସନ୍ତାନେ,
ଦେବେ କଷ୍ଟ ? ବୁଝି ଯାଉ ନାହିଁ ଅନୁମାନେ ।
ସ୍ୱଭାବ ସଂସ୍କାରାଧୀନ ତୁଚ୍ଛ ପ୍ରାଣିଗଣେ,
ମହୋଚ୍ଚ ମାନବ ଚଳେ ବିବେକ-ଶାସନେ ।

ଭ୍ରାନ୍ତଜୀବ ମୋହପାଶେ ହରଇ ବିବେକ,
ଅସତ୍କାର୍ଯ୍ୟ-ଫଳ ଭୁଞ୍ଜେ ଯନ୍ତ୍ରଣା ଅନେକ ।
ଜରା, ମୃତ୍ୟୁ ହସ୍ତୁଁ ପ୍ରାଣୀ ପାଇବେ ଉଦ୍ଧାର,
କେ କରିବ ଏ ପ୍ରକାର ମାର୍ଗ ଆବିଷ୍କାର ।

ନିଶି ଅବସାନ ପ୍ରାୟ ସଙ୍ଗୀତକାରିଣୀ,
ଅନୁଭବେ ସୁଖନିଦ୍ରା ସନ୍ତାପହାରିଣୀ ।
ସିଦ୍ଧାର୍ଥ ଶୟାନ ଅବା ଛନ୍ତି ସଚେତନ,
ନିସ୍ତବ୍ଧ ନିଶ୍ଚଳ ଦେହ ମୁଦ୍ରିତ ନୟନ ।

ସ୍ୱପନ ବା ସତ୍ୟ କଥା ନ ପାରନ୍ତି ଜାଣି,
ଏହା କି ସଙ୍ଗୀତ ଗାଥା ଅବା ଦୈବବାଣୀ ?
ମାନବର ଭାଗ୍ୟେ ଘଟେ ଏମନ୍ତ ଘଟଣା,
ଅଲକ୍ଷ୍ୟ ଭାବରେ, ତତ୍ତ୍ୱ ଯାଏ ନାହିଁ ଜଣା ।

ସିଦ୍ଧାର୍ଥ ସିଦ୍ଧାନ୍ତ କଲେ ଜଗତ ସଂସାର,
କରିବ ଉଦ୍ଧାର—ସତ୍ୟମାର୍ଗ ଆବିଷ୍କାର ।
ମାୟାବଶେ, ରସୋଲ୍ଲାସେ କାଟିଛି ସମୟ,
ଯାଇଛି ଯା ଯାଉ ! ତାହା ବାହୁଡ଼ ନିଶ୍ଚୟ ।

——

# ବସନ୍ତାଗମ
## (୰କବି ଗଙ୍ଗାଧର ମେହେର)
## କୀଚକବଧ

ବସନ୍ତ ବିଜୟ ବାରତା
ପ୍ରଚରିଲା ଭୁବନେ,
ପାଦପ-ଆଗାତ ପତ୍ରରେ
ପରଭୃତ ପଠନେ ।
ଗନ୍ଧବହ କଣ୍ଠେ ପଡ଼ିଲା
ଋତୁ ସମ୍ରାଟ ଭୂଷା,
ଗମିଲେ ସରଳ ପଥରେ
ତେଜି ଦକ୍ଷିଣ ଆଶା ।

ଶିଶିର ନାଶଇ ପଦ୍ମିନୀ
ଘନ ରବିଙ୍କି ଗ୍ରାସେ,
ଏଣୁ ଋତୁପତି ନାମରେ
ରବି ରହିଲେ ତ୍ରାସେ ।
ଗ୍ରହରାଜ୍ୟ ହେଲା ପ୍ରସନ୍ନ
ତାଙ୍କ ଗ୍ରହ ସରବେ,
ବିଳସିଲେ ମଣ୍ଡି ବିଗ୍ରହ
ରମ୍ୟ ପ୍ରଭା ବିଭବେ ।

ପତି-ନିଚଗତି-ଦୁଃଖରେ
କ୍ଷୀଣ ଥିଲା ବାସର,
ଫୁଲାଇଲା ମୁଦେ ଶରୀର
ମୁଖ କରି ସୁନ୍ଦର ।

ହରଷିତ ବନ ବର୍ଦ୍ଧନ
ଦେଖି ଲୋକ ଦମ୍ପତୀ,
ଆନନ୍ଦ ନ ହୁଏ କାହାର
ଗୃହେଁ ପ୍ରିୟ ସମ୍ପତ୍ତି ।

ଭାନୁ ଯମାଳୟୁ ଗମନ
ଦେଖି ପଦ୍ମିନୀ ସତୀ,
ବିଷ୍ଣୁପଦ-ସ୍ରୁତ ଜଳରେ
ଝାସି ଥିଲା ଯୁବତୀ ।

ତପ ଫଳେ ଏବେ ସୁନ୍ଦରୀ
ନବ ଜନମ ଲଭି,
ଧ୍ରୁବ-ସମ୍ମୁଖୀନ ପତିଙ୍କ
ହେଲା ପ୍ରିୟବଲ୍ଲଭୀ ।

ବସନ୍ତ ଅତିଥି ପୀରତି
ପାଇ ଅବନୀ ରାଣୀ,
ଯୋଗାଡ଼ ରଖିଲା ଭଣ୍ଡାରେ
ନାନା ପଦାର୍ଥ ଆଣି ।

ତରଭୁଜ ଆମ୍ବ ପନସ
ନାନା ଖାଦ୍ୟ ସମ୍ଭାର,
ଉପହାର ପାଇଁ ଉତ୍କଳ—
ଫୁଲ ମାଣିକ୍ୟ-ହାର ।

ପ୍ରମୋଦ ନିମନ୍ତେ କାନନ
ମଣ୍ଡାଗଲା ଯତନେ,
ମଧୂକ-ମୁକୁତା-ପୁଞ୍ଜରେ
ଗୁମ୍ଫି ନୀଳ ରତନେ ।

ରସମୟ ସିନ୍ଧୁ ତରଙ୍ଗ—
ଦୋଳା ବରଷି ରଙ୍ଗେ,
ବହେ କହେ ଧୀର ସମୀର
ଋତୁ ବସନ୍ତ ସଙ୍ଗେ ।

ପୁଷ୍ପଛାୟା-ସ୍ନିଗ୍ଧ-ସୁଗମ୍ୟ
ପୁଷ୍ପମୟ ମାର୍ଗରେ,
ଆସି ବାହାରିଲେ କୁସୁମ—
କୁଞ୍ଜେ ଅନୁରାଗରେ ।

ବିକସିତ ନବମାଲିକା—
ଅର୍ଘ୍ୟ ଧରି ସମ୍ମୁଖେ,
ଚନ୍ଦ୍ରିକା ସୁନ୍ଦରୀ ସ୍ୱାଗତ
କଲା ଚକୋର ମୁଖେ ।

ଉଜ୍ଜ୍ୱଳ ବସନ ଭୂଷଣ
ମନୋହର ବେଶରେ,
ସୁକାନ୍ତ ସୁମୁଖୀ ସହର
ମିଳିଗଲା ପାଖରେ ।

ସୁକୁମାର ବିଶ୍ୱବିଜୟୀ
ଅନୁପମ ସୁନ୍ଦର,
ପୁଷ୍ପମୟ ବେଶେ ମିଳିଲେ
ତହିଁ କୁସୁମଶର ।

ପାଞ୍ଚ ଜଣ ମିଶି ଆମୋଦେ
ହିରଚିଲେ ତାଣ୍ଡବ,
ତାଣ୍ଡବ ନୁହେ ତା, ସରସ—
ଫଳପୂର୍ଣ୍ଣ ଖାଣ୍ଡବ ।

ସେ ଖାଣ୍ଡବ ଫଳ ଭୋଜନେ
ହେଲୁ ଜଗତ ଲୁବ୍ଧ,
କେ ପାଇ ଆନନ୍ଦେ ନାଚଇ
କେ ବା ନ ପାଇ କ୍ଷୁବ୍ଧ ।

ସନ୍ତାପିତ ହେଲୁ ମଧ୍ୟାହ୍ନ
ପିତୃପ୍ରସୂ ସୁନ୍ଦର,
ପଲ୍ଲବିତ ହେଲେ ପାଦପେ
ଶୁଷ୍କ ନଦୀ ଉଦର ।

କିଂଶୁକ ରକତ ବସନ
ବନକାନ୍ତି ବଢ଼ାଇ
ଚନ୍ଦ୍ରକାର ନବ ପ୍ରସୂତୀ
ବଲ୍ଲବୀ ସଢ଼ାଇ ।'

ପ୍ରୀତ ପାଦ୍ୱବାରେ ଛାଡ଼ିଲେ
ପ୍ରାଣପୋତ ଯୋଗିଏ,
ମଦନ-ଅନଳତାପରେ
ବିଚଳିତ ଯୋଗିଏ ।

# ଶଶୀପ୍ରଭା

## (୰ କବି ଚିନ୍ତାମଣି ମହାନ୍ତି)

ଶଶୀପ୍ରଭା ନାମେ ଶଶୀପ୍ରଭାମୟୀ
ତାହାଙ୍କ ସହଧର୍ମଣୀ,
ରୂପେ ଗୁଣେ ବାଳା ଅନୁପମା, ଭବେ
ମତ୍ତମାତଙ୍ଗ-ଗାମିନୀ ।

ଭାବୁଥିଲେ ଲୋକେ ଦେଖି ସେ ରୂପସୀ
ମୌଳିମଣି ରୂପପ୍ରଭା ;
ଶୋଭା ସ୍ୱର୍ଣ୍ଣଛଟେ ସତର୍କେ ବରଣ୍ଣି
ଉଭାରଛି ତାର ଅବା ।

ସୁକୁମାର ବପୁ କିବା ସେ ଶିରୀଷ
କୁସୁମ ଶଚୀ ପିଚ୍ଛୁଳ,
ବାଳାତପ ତେଜ ପରଶ ମାତ୍ରକେ
ସତେ ବା ଯିବ ଝାଉଁଳି ।

ନେତ୍ରଯୁଗ କି ସେ ବସିଛନ୍ତି ଆସ୍ୟ-
କଞ୍ଜେ ଯୁଗ୍ମ ଖଞ୍ଜରୀଟ,
ଅଳକା କିବା ସେ ଫୁଲ୍ଲ କମଳରୁ
ବେଢ଼ିଛନ୍ତି ମଧୁଲିଟ ।

ଜୟନ୍ତୀ ସୁମନ ଆରକ୍ତିମ କାନ୍ତି
ଅଧର କଅଇ ଦଳ,
ନାସା ସୁଷମାରେ ସ୍ୱର୍ଣ୍ଣବଂଶୀ ଧୈର୍ଯ୍ୟ
ଲଜ୍ଜାରେ ଯିବ ତରଳ ।

ଶମ୍ପା ଗୌରୀ ଭାଲେ          ସିନ୍ଦୂର ବିନ୍ଦୁଟି
ଆଭାସେ କେତେ ରୁଚିର,
ହେମ ଘନ ଭେଦ          ଉଇଁ ଛନ୍ତି କିବା
ପ୍ରଭାତେ ବାଳ ମିହିର ।

ଶ୍ରବଣ ଯୁଗଳେ          ଦୂରୁ ହୀରା କାପ
ଦିଶଇ ମଞ୍ଜୁଳ ଅତି,
ମୁଖ ଶଶଧରେ          ଶୁକ୍ର-ବୃହସ୍ପତି
କରନ୍ତି କିବା ଆଳତି ।

ବସ୍ତ୍ର ଆବରଣ          ଫୁଟି ଝଟକଇ
କମ୍ବୁ କଣ୍ଠୀ ମୋତିହାର,
ସ୍ୱଚ୍ଛ ବଳାହକ          —ମଧ୍ୟେ ଆଭାସେ କି
ଧାଡ଼ିଏ ଧାଡ଼ିଏ ତାରା ।

ଡମ୍ବରୁ ମଧରୁ          କରଯୁଗେ ଶୋହେ
ସରୁ ଶଙ୍ଖା ହିଙ୍ଗୁଳିତ,
ପଦ୍ମରାଗ ବର୍ଣ୍ଣ          ଖଇଁଚ ଲାଲ ତା
ମୃଣାଳେ ଯଥା ଜଡ଼ିତ ।

ବିପରୀତ ରମ୍ଭା          ତୁଳେ ଗୁରୁ ଉରୁ
ନିତମ୍ବ ଅତି ପୃଥୁଳ ;
କରଜ-ପଙ୍କ୍ତି କି          ଶୋଭା—ସରୋବରେ
ଫୁଟିଛି କହ୍ଲାର ଫୁଲ ।

ରୂପେ ଗୁଣେ ବାଳା          ସଙ୍ଗେ ସର୍ବ ହେଲେ
ହେବେ ଲୋକ-ମାତା ରମା,
ମର୍ତ୍ତ୍ୟ ଲୋକେ ଏକା          ଅଟେ ସିନା ସେହି
ତାହାର ଯୋଗ୍ୟ ଉପମା ।

ଅତ୍ୟଳ୍ପ ଭୂଷଣେ ଭୂଷଣ-ଭୂଷଣା
ଶୋଭେ ଦେବୀ ଶଶୀପ୍ରଭା,
ବହୁଅଳଙ୍କାରେ ଲୁବ୍‌ଧମନା କେବେ
ହୁଏ କି ସତୀ ସଧବା ?

ପର ପୁରୁଷକୁ ଅବଲୋକ ବାଳା
ନ କରଇ ଟେକି ମୁଖ,
ସୁକୃତ କରମେ ସଦା ରତ ଥାଏ
ସତ୍ୟେ ମଣେ ମହାସୁଖ ।

ରୂପ ଗୁଣ ଦେନି ମଧ୍ୟେଁ ସଦାକାଳେ
ଲାଗିଅଛି ଭ୍ରାତୃକଳି,
ଜନ୍ମୁ ବାଳାଠାରେ ସେ ଦେନି ମିଳଣ
ଥିଲେ ନୀରକ୍ଷୀର ଭଳି ।

ଏକକୁ ଆରେକ ଯୋଗ୍ୟ ପତ୍ନାନ୍ତର
ଥିଲେ ସେ ଦ୍ୱିଜ ଦମ୍ପତି ;
ସ୍ୱାମୀ ସେବନକୁ ମଣୁଥିଲା ବାଳା
ମୁକତି ସ୍ୱର୍ଗ-ସମ୍ପତ୍ତି ।

ତେଣୁ ସ୍ୱାମୀ ପୁଣ୍ୟ ସରୋଜ-ପଦ୍ମରେ
ଅବଳା ମୁକୁଟହୀରା,
ଦାନ କରିଥିଲା ମନ ପ୍ରାଣ ଯଥା
ସୁଧା କର ପଦେ ତାରା ।

ଦେନି ହୃଦ ରାଜ୍ୟେ ଦେନିଏ ଦେନିଙ୍କୁ
କରିଥିଲେ ଅଭିଷେକ
ପ୍ରେମ ଜଳେ ତେଣୁ ଦେନିଙ୍କର ଆତ୍ମା
ମିଶି ହୋଇଥିଲା ଏକ ।

ଏକ ପିଞ୍ଜରା ସେ ଯୁଗ୍ମ ଶୁକ ସାରୀ
ଅବା ସେ ପୁଂସ ଲଲନା,
ଏକ ବୃନ୍ତେ ବେନି— ଫଳ ସେହୁ ବେନି
ଏସନ ହୁଏ କଳନା ।

ସାଧୁ ଆତ୍ମା ଘନା ସାଧୁ ଆତ୍ମା ସଙ୍ଗେ
ମିଶିଯାଏ ଅବହେଳ,
ସାର ସୁବର୍ଣ୍ଣରେ ମିଶି ପାରଇ କି
କୃତ୍ରିମ ବେଙ୍ଗି ପିତ୍ତଳ ?

ଏ ମାୟା ସଂସାରେ ସକଳ ଅସାର
ଧର୍ମ ଏକା ସତ୍ୟ ଧନ,
ନାରୀ ଧର୍ମ ମଧ୍ୟେ ସାର ସ୍ୱାମୀସେବା
ପାତିବ୍ରତ୍ୟ ସଂରକ୍ଷଣ ।

ତେଣୁ ସ୍ୱାମୀ ପଦେ ସେବୁଥିଲୁ ବାଳା
ମଣି ତାହୁ ମୁକ୍ତିପଥ,
ନ ଛୁଇଁ ସେ ଜଳ ନ କରିବା ଯାଏ
ପାରାୟଣ ଧର୍ମଗ୍ରନ୍ଥ ।

ମୂର୍ଖ ନୀଚ ଜନେ ଦେବତା ସମାନେ
ହୁଅନ୍ତି ଧରମ ବଶୁଁ,
ଧର୍ମହୀନ ବିଜ୍ଞ କୁଳୀନ ସଙ୍ଗତେ
ତୁଳନା କେବଳ ପଶୁ ।

ଆନ କେ କରିବ ଅୟସେ ସୁବର୍ଣ୍ଣ
ଅୟସ୍କାନ୍ତ ମଣି ବିନା,
ସୁକୃତି ତେସନ କରିପାରେ ଏକା
ନୀଚ ଜନେ ଉଚ୍ଚ ସିନା ।

ସ୍ୱାମୀ ସୁଖେ ଦୁଃଖେ ସମଭାଗୀ ହୋଇ
ଧାମିଣ ପ୍ରାଣାରାମଙ୍କୁ,
କାଳ ଅନ୍ତିମ ସାର୍ଥ କରିଥିଲ
ସହଧର୍ମିଣୀ ନାମକୁ ।

ପୁଣ୍ୟାଶୁଗେ ଲଭି ରତି ସତୀ ଯଥା
ହୋଇଥିଲେ ଆହ୍ଲାଦିନୀ,
ଅଥବା ଯେସନ ସତ୍ୟବାନେ ଲଭି
ଅଶ୍ୱପତିଙ୍କ ନନ୍ଦିନୀ ।

କି ଅବା ଯେସନ ବଶିଷ୍ଠ ମହର୍ଷି
ଲଭେ ସତୀ ଅରୁନ୍ଧତୀ,
କିମ୍ବା ଯେହ୍ନେ ପାଇ ପତିରୂପେ ନଳେ
ରାଜକନ୍ୟା ଦମୟନ୍ତୀ ।

ଅବା ଦେବ—ଦେବ ଚନ୍ଦ୍ରଚୂଡ଼େ ଲଭି
ଯଥା ହିମାଦ୍ରି-ଦୁହିତା,
କିବା ଯଥା ରାମେ ରାମ ଦୂର୍ବାଦଳ-
ପ୍ରଭାଙ୍ଗ ତାରକା ସୀତା ।

ତେସନ ଲଭିଣ ନିଜ ଯୋଗ୍ୟପତି
ପୀତାମ୍ବରେ ଶଶୀପ୍ରଭା,
ମଣୁଥାଏ ନିତି ସ୍ୱର୍ଗର ନିଶୁଣୀ
ଜରଗଡ଼ ହେଲା ଅବା !

ଦେବତା ଅତିଥି ଗୁରୁ ବୃଦ୍ଧେ ମାନ୍ୟ
ସମର୍ପି ଯଥା ବିହିତ,
ବ୍ରତପରାୟଣ ହୋଇ ସେ ଦମ୍ପତି
ସତ୍କାର୍ଯ୍ୟେ ଥିଲେ ନିହିତ ।

ଆଳସ୍ୟ ଇନ୍ଦ୍ରିୟ— ସେବା, ମିଥ୍ୟାବାଦ
କ୍ରୋଧେ ବନ୍ଧୁ ନମସ୍କାର,
ପାଳୁଥିଲେ ଯତ୍ନେ ଧର୍ମ ସତ୍ୟ ଦୟା
ସୌଜନ୍ୟ ପରୋପକାର ।

ଜ୍ଞାତି, ପ୍ରତିବେଶୀ ସମସ୍ତଙ୍କ ଠାରେ
ବେନିଙ୍କ ଥିଲା ସଦ୍‌ଭାବ,
ନିଜେ ଛିଦ୍ରବାନ ଯେ ଯିନା, ସେ ପୋଷେ
ହୃଦୟେ କୁଟିଳ-ଭାବ ।

ଶାସ୍ତ୍ର ରସାମୃତ ପାନେ ସେ ଦମ୍ପତି
ସୁଖେ କାଟୁଥିଲେ ଦିନ ;
ସଂସାର ସଙ୍ଗତେ ବାନ୍ଧ୍ୟେ ମିଶି ପୁଣି
ସଦା ଥିଲେ ଉଦାସୀନ ।

ସର୍ବ ସୁଖେ ସୁଖୀ ହୋଇ ଯେଉଁଥିଲେ
ଦିନ ସେ ପୁଂସ ଅବଳା,
ସନ୍ତତି ଅଭାବେ କିନ୍ତୁ ସେ ସୁଖରୁ
ଊଣା ଥିଲା ଏକ କଳା ।

ମାନବଙ୍କ ଘର ଲାଗି ରହିଅଛି
ଅଭାବ ଦେବ ଜୀବନେ,
ଷୋଡ଼ଶ କଳାରେ ତାରା-ରମଣଙ୍କ
ଉଇଁଛି କେବେ ଗଗନେ ?

ତିନି ଭୁବନରେ କୁତ୍ରାପି ନୁହେଁ ତ
ସୁଲଭ ବିଶୁଦ୍ଧ ସୁଖ,
କାୟା ଛାୟା ପ୍ରାୟ ସୁଖ ସଙ୍ଗେ ସଦା
ପ୍ରଚ୍ଛନ୍ନରେ ଥାଏ ଦୁଃଖ ।

ଧର୍ମର କୁଟୁମ୍ବ ଅଭାବ, କୁଟୁମ୍ବୀ
ଜନର ଅଭାବ ଧନ,
ଧନ କୁଟୁମ୍ବରେ ଏହ୍ୱପଥ୍ ସଦା
ଲୁଟିଅଛୁ ବୈରପଣ ।

—o—

# ନବବର୍ଷା ଭାବନା

(୰ନନ୍ଦକିଶୋର ବଳ)

( ୧ )

ମେଘ ବରଷଇ ବିଜୁଳି ମାରଇ
ପର ନ ବହଇ ଘରେ,
ତରୁଣ ଯୌବନେ ପରାଣ-ପ୍ରତିମା
ଛାଡ଼ି ଆସିଅଛି ଘରେ ।

ଭାବର ଆବେଶେ ଦୂର ପରବାସେ
ମନେ ପଡ଼େ ପ୍ରିୟା ଯାହା,
ତାହାର ସଙ୍ଗତେ ଦରଶନ ଦିଏ
ଅତୀତ-ଜୀବନ-ଛାୟା ।

ଆମ୍ବ ବଗିଚାରେ ଶିଆର ଲଟାରେ
ଯେବେ ଦୋଳ ଖେଳୁଥାଇଁ,
ପର୍ବତ-ଶିଖରେ ଲଟା ଚଢ଼ି ମେଘ
ମହାବେଗେ ଆସେ ଧାଇଁ ।

କ୍ରୀଡ଼ା ଦେଖି ଶିଶୁ ଦେଇ ହୁରି ବୋଲ
ଦଉଡ଼ି ଯାଆନ୍ତେ ଘରେ,
ଅର୍ଦ୍ଧପଥେ ମେଘ ଗୋଡ଼ାଇ ଧରଣ
ଝପି ଯାଏ ତାଙ୍କୁ ଖରେ ।

କେତେ ହ୍ରଦ ନଦୀ କେତେ ଗିରି ବନ
କେତେ ଘର ଗ୍ରାମ ଡେଇଁ,
ଦେଶ ଦେଶାନ୍ତରେ ଯାଏ ଗୃହ ମେଘ
କେଉଣ ସନ୍ଦେଶ ନେଇ ?

ଦେଖୁ ଦେଖୁଁ ମେଘ  ଚଉଦଗେ ଘୋଟେ
ଅଣୁଅଣି ହୋଇ ପାଣି,
ସ୍ନାନାର୍ଥେ ଆଗତା  ସାଧବ ବୋହୂଙ୍କୁ
ଭସାଇ ନିଏ କି ଠାଣି ?

ଜଳ ବୁଦ୍‌ବୁଦ୍‌କୁ  ଅନାଇଁ ଅନାଇଁ
ଶୈଶବ-ନଳମ୍ବେ ଡେବେ,
ବର୍ଷ-ଚତୁର୍ମାସ୍ୟା—  ଗୀତ ଶୁଣିଥିଲି
ମନେ ପଡ଼େ ତାହା ଏବେ ।
"ମେଘ ବରଷିଲା  ଟପର ଟପର
କେଶୁର ମାଇଲା ଗଜା,
କେଉଁଠି ବଉଳରେ  ରହିଲେ ମୋ ରଜା
ଢୋଙ୍ଗି ବାଇଦ ବଜା ।"

( ୬ )

ପ୍ରଭାତୁଁ ଉଠିଣ  ଯାନ୍ତି ଯେଝା ଦୁଃଖେ
ଦୁଃଖୀ ଗ୍ରାମବାସୀମାନେ,
ସାରି ବାସିକାମ  ସାଙ୍ଗେ ପାଞ୍ଚ ମିଳି
ବଧୂମାନେ ଯାନ୍ତି ସ୍ନାନେ ।
ହୁଙ୍କା-ବାଲି-ବଳେ  ଫୁଟି ଉଠେ ଛତୁ
ଘୋର-ଘନ-ନାଦ ପାଇ,
ସାନ ସାନ ପିଲା  ଛତୁ ତୋଳୁଥାନ୍ତି
ପ୍ରଭାତରୁ ଉଠି ଯାଇ ।
ଝୋଠା ବେତ ବଣେ  ବସି ଶାରୀ ଶୁଆ
ଝରଝରରେ ଗାବନ୍ତି,
ପକ୍ୱ ଫଳ ଘେନ  ବନ-ମହୋତ୍ସବ
କରନ୍ତି ବାୟୁସପନ୍ତି ।

ପଲ୍ଲୀ-ଉପବନେ କାଉଁଶ-ଲତିକା
ସାହାଡ଼ାତରୁର ତଳେ,
ମନେ ଅଛି ସେହି ବାଲମହୋତ୍ସବ
ସଙ୍ଗିବୃନ୍ଦଙ୍କ ଗହଳେ ।

ବିଶ୍ୱାମିତ୍ର ସଙ୍ଗେ ଶ୍ରୀରାମ ଲକ୍ଷ୍ମଣ
ସାଜୁ କେହି ଗୃହେ ଗୃହେ,
ନାଚ ନାଚ କାଲେ ଚାଲି ଯାଉଥାନ୍ତି
କି ରଙ୍ଗେ ମିଥିଲା ଦାଣ୍ଡେ ।

ଭୀମ ସାଜି କେହି ବିରାଟ ରାଜ୍ୟରେ
କୀଚକ ସହିତେ ରଣ,
ରଚୁଥିଲେ ପରା କପଟଭାବରେ
କ୍ରୀଡ଼ା ସଙ୍ଗୀ ଦୁଇ ଜଣ ।

ମାୟାମୃଗରୂପୀ ମାରିଚ ପଛରେ
ଗୋଡ଼ାନ୍ତେ ରଘୁପ୍ରବର,
ମେଘ ପାଣି ଦେଖି ଗୀତ ଗାଇଥିଲେ
ହସ୍ତେ ଧରି ଧନୁଶର ।

“ମେଘ ବରଷିଲା ଟପର ଟପର
କେଣ୍ଟୁର ମାଇଲା ଗଜା
କେଉଁ ରାଇଜରେ ରହିଲେ ମୋ ରଜା
ତେଲିଙ୍ଗି ବାଇଦ ବଜା ।”

( ୩ )

ଗୃହୁମୀସ୍ୟା-ସନ୍ଧ୍ୟା ଆହା କି ମଧୁର !
ସେ ଛବି ଦର୍ଶନ କରି,
ଭାବୁକ-ହୃଦୟେ ଉଛୁଳି ଉଠଇ
ଅସଂଖ୍ୟ ଭାବ-ଲହରୀ ।

ମନେ ଅଛି ସେହି    ଶୈଶବର କଥା
ଶୁଭଇ ସେ ଶବ୍ଦ କାନେ,
ସେ ମଧୁର ଧ୍ୱନି    ବାଜଣ ଉଠଇ
ହୃଦୟ-ବି ତନ୍ତ୍ରୀ-ତାନେ ।

ପଶ୍ଚିମ ଗଗନେ    ଅସ୍ତ ଯାଉଥିଲ
ନୀରବ ଭାବରେ ଭାନୁ,
ଓହ୍ଲାଇ ଆକାଶୁଁ    ଢାଙ୍କି ଥିଲ ମେଘ
ଅଭ୍ରଭେଦୀ-ଗିରି-ସାନୁ ।

ପଲ୍ଲୀ-ବଧୂଗଣ    ନୀର-ଆହରଣେ
ଘେନ ଯାଉଥିଲେ ଘର,
କୁଳି କୁଉଁ କୁଉଁ    ବାଜିଲ କେନ୍ଦରା
ନାଥ ଭିକ୍ଷା ମାଗେ ପର !

ମିଟି ମିଟି ଆଖି    ନୂଆ ବୋହୂଟିଏ
ସଜାଡ଼ୁ ଥିଲ ଜାଳେଣି,
ବାଡ଼ ଉହାଡ଼ରୁ    ଭୂଆମଇତାନି
ଡୋକୁଥିଲ ତା ସଙ୍ଗିନୀ ।

ଡାଳ ଦାହୁଙ୍କାରେ    ଲୁଚି କୁମ୍ଭାଟୁଆ
ଗାଉଥିଲ ହୁଉଁ ହୁଉଁ,
ଝିପି ଝିପି ମେଘ    ବରଷି ଆସିଲ
ଦେଖୁଁ ଦେଖୁଁ ଝୁମୁ ଝୁମୁ ।

ବାଦ୍ଲା ମେଘ ଦେଖି    ବାଦ୍ଲା ପରି ହୋଇ
ନାଚ ନାଚ ଶିଶୁମାନେ,
କରତାଳ ଦେଇ    ଗୀତ ଗାଉଥିଲେ
ଘୋର ଉଚ୍ଚ ତାନମାନେ ।

"ମେଘ ବରଷିଲା ଝପର ଝପର
କେଶୁର ମାଇଲା ଗଜା,
କେଉଁ ଗାଇଁଜରେ ରହିଲେ ମୋ ରଜା
ଭେଲଙ୍ଗି ବାଇଦ ବଜା" ।

( ୪ )

ବାଲ ଢୋଠା ଖାଠ ବାଠ ଘାଠ ସବ
ଯାଇଥିଲା ପୂର ଜଳେ,
ଦୂରୁ ଶୁଭୁଥିଲା କୃଷକ-ଗୋପାଳ—
ଗୀତ-ଲହରୀ ଚହଲେ ।

ଘନ-ନୀର ସିକ୍ତ ମଥାନ ଭେଦଣ
ଉଠୁଥିଲା ଧୂମ ଘନ,
ଗ୍ରାମ ବଣ୍ଡବାଣ୍ଡ— ଆଉ ଶୁଭୁଥିଲା
କୋକଶିଆଳଙ୍କ ସ୍ୱନ ।

ପଲକେ ପ୍ରଦୋଷ ଉନ୍ମେଷଣ ଗଲା
ଘୋଟିଲା ଘୋର ଅନ୍ଧାର,
କଏ କେଉଁ ଆଡୁ ଫେରିଲେ ଉଦ୍‌ବେଗେ
ନିଳୟେ ଯେହ୍ନ ଯାହାର ।

ଭାଗବତ-ଘରେ ରାମାୟଣ ପୋଥି
ଗାଉଥିଲେ ପୁରୋହିତ,
ଘୋର ବରଷାରେ ଅଶୋକ ବନରେ
ସତୀ-ବୈଦେହୀ-ଚରିତ ।

ଭାଗୀରଥୀ-ତୀରେ ଗହନ କାନ୍ତାରେ
ଦେବର ଲକ୍ଷ୍ମଣ ଥରେ,
ରଥୁ ଅବତାର ସୀତାଙ୍କୁ ଏକାକୀ
ତେଜି ଫେରିଲେ ନଗରେ ।

ପ୍ରଥମ ଯାମରେ ଗାଆଁ ତଳ ବିଲେ
ବେଲବଣ-ଅଭମୂଟେ,
ନୈସର୍ଗିକ ଘଣ୍ଟା ବଜାଇ ଉଠିଲେ
ଶିବାଗଣ ହୁକେ ହୁକେ ।

ଭଗବାନ-ଘରୁ ମାତାଙ୍କ ସଙ୍ଗରେ
ଫେରିଗଲା ଶିଶୁ ଘରେ,
ନୂଆବୋହୂ ପାଶେ ବସି ବର୍ଷା ଗୀତ
ଗାଇଲା ଚୁଲ୍ଲି-ମୁଣ୍ଡରେ:—

"ମେଘ ବଲଥିଲା ଚପଲ ଚପଲ
କେଥିଲ ମାଇଲା ଗଦା
କୋଉ ଲାଇଦଲେ ଲଇଲେ ମୋ ଲଦା
ତେଲଙ୍ଗି ବାଇଦ ବଦା ।"

---

# କାଦମ୍ବରୀ

## (୰ବଡ଼କୁମାର ବଳଭଦ୍ର ଦେବ)

### ଦ୍ୱିତୀୟ ସର୍ଗ—ପ୍ରଭାତ ବର୍ଣ୍ଣନା

ପୂର୍ଣ୍ଣିମା ନିଶାନ୍ତ ଉଷାଲୋକେ ହେଲା
ପ୍ରାଚୀଦିଗ ସମୁଜ୍ଜ୍ୱଳ,
ବୃଦ୍ଧ କୁରଙ୍ଗର ରୋମ ସମ ପାଣ୍ଡୁ,
ଦିଶିଲା ଚରମାଚଳ ।

ସ୍ୱର୍ଗଚ୍ୟୁତ ହୋଇ ସିନ୍ଧୁଜଳେ ଡେଇଁ
ଚନ୍ଦ୍ରେ ତାର ପଖାଳି,
ଯେଣୁ ବାଦସ୍ଥଳେ ପଶ୍ଚିମ ଯେମନ୍ତ
ପଡ଼ିଲା କାନ୍ଦବୋବାଳି ।

ଗର୍ଭବତୀ ପ୍ରାଚୀ ଏଣେ ସେହିପରି
ରବିଙ୍କୁ ପ୍ରସବ କରୁଁ,
ଶଙ୍ଖ ହୁଳହୁଳି ଶୁଭିଲା ଭ୍ରମର
ହୁଙ୍କୃତ କୁଳ ମୁଖରୁ ।

ପଦ୍ମ ମଧୁବୋଳା ହଂସ ପରି ଜଳେ
ପହଁରିଲେ ଦିନାକର,
ଗଜରକ୍ତେ ଲିପ୍ତ ସିଂହ ମୁଖସମ
ଉଦିଲେ ନବଭାସ୍କର ।

ତପ୍ତ ଲାକ୍ଷା ସୂତା ସମାନ ସବିତା
ବୃଦ୍ଧି କର-ରଶ୍ମିଶ୍ରେଣୀକି,
ଆକାଶ ପଥରୁ ପରିଷ୍କାର କଲା
ଝାଟେଇ ତାରାବଳୀକି ।

ଉଷା ବନ୍ଦବାକୁ ଉଡୁର ଦଳକୁ
ଓହ୍ଲାଇଣ ଧୀରେ ଧୀରେ,
ସପ୍ତର୍ଷିମଣ୍ଡଳ ପ୍ରବେଶିଲେ ଆସି
ମାନସରୋବର ତୀରେ ।

ଉନ୍ମୀଳିତ ହେଲେ ଶୃଙ୍ଗମାନେ ଦୂରେ
ପଶ୍ଚିମ ସିନ୍ଧୁ କୂଳରେ;
ସେ ଶୃଙ୍ଗ ମଧ୍ୟରେ— ସ୍ଥିତ ସମୁଜ୍ଜ୍ୱଳ
ମୁକ୍ତାବଳି ସ୍ୱଜ୍ୟୋତିରେ ।

ମୂଳନ ଦେଶକୁ ଶୁଭ୍ର ବର୍ଣ୍ଣେ ରଞ୍ଜି
ହୋଇବାରୁ ପ୍ରକାଶିତ,
ପ୍ରଭେ ହେଲା ପଡ଼ି— ଥିଲେ କି ତାରାଏ
ସୂର୍ଯ୍ୟାଜରେ ହୋଇ ଛିନ୍ନ !

ପାଦପ ପଲ୍ଲବୁଁ ଥପ ଥପ ହୋଇ
ଖସିଲା କଣା ଶିଶିର,
ଅରଣ୍ୟ ପ୍ରଦେଶ କମ୍ପାଇଁ ମଧୁର
ସ୍ୱର ଶୁଭିଲା ଶିଖୀର ।

ନବୀନ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟ ତରୁଏ
ପଲ୍ଲବଯୁକ୍ତ ଅଞ୍ଜଳିରେ,
ହିମ-ବିନ୍ଦୁସିକ୍ତ ଫୁଲରେ ତାହାଙ୍କୁ
ପୂଜିଲେ ଯଥାବିଧିରେ ।

ବନ-ଦେବତାଙ୍କ ଅଟ୍ଟାଳିକା ଶିରେ
ଧାର୍ମିକର ଧ୍ୱଜ ବତ,
ହୋମ ଧୂମ ଉଠି ଅନ୍ତରୀକ୍ଷେ ହେଲା
ମନ୍ଦ ବାତେ ଇତସ୍ତତ ।

ପ୍ରଫୁଲ୍ଲ କମଲ— କାନନ କମ୍ପାଇ
ସାନ୍ଦ୍ର ହିମକଣା ବହୁ,
ରବିଙ୍କ ଉଦୟ ସମାଚାର ପ୍ରତି
ମୁକ୍ତ କଣ୍ଠେ କହୁ କହୁ !

ସୁହାସେ ମୁଖରୁ ଝାଳଲବ ପୋଛି
ଶ୍ରାନ୍ତ ଶବରୁଣୀଙ୍କର,
ନଚାଇ ବିବିଧ ରଙ୍ଗେ ପଲ୍ଲବିତ
ବ୍ରତତୀ ତରୁ ନିକର ।

ମଧୁପମାନଙ୍କ ମତାଇ ମଧୁର
କୁସୁମ ଗନ୍ଧେ ଅଧୀରେ,
ବହିଲା ପ୍ରଭାତ ଶୀତଲ ସମୀର
ମନ୍ଦପାଳ ! ସବିଧିରେ ।

ଉଷା ସଙ୍ଗ ଛାଡ଼ି ଦକ୍ଷିଣ ନାୟକ
ପରିଏ ଦେବ ତପନ,
କ୍ରମେ ନଭେ ଉଠି ଚୁମ୍ବିଲେ ମୁକୁର-
ଦିଗବଧୂର ବଦନ ।

---

# ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ
## ( ୰ଉତ୍କଳମଣି ଗୋପବନ୍ଧୁ ଦାଶ )
### କାସ୍ୱକବିତା

କାହା'ରେ ଗାଇବ ପରାଣ-ସଙ୍ଗୀତ
କାପାଶେ ବାଇବ ଅନ୍ତର-ବୀଣା,
କା କାନେ କହିବ ମରମ-ବେଦନା,
ମନ କଥା ମନେ ରହିଲା ମ୍ଳାନା !

ଜୀବନ-ପ୍ରଭାତେ ଆପଣାର ବୋଲି
କରିଥିଲି ଯାକୁ ପରାଣ-ସଖା,
ସେ ତ ନ ଜାଣିଲା ମୋ ଅନ୍ତର ଗତି
ଦେଲା ମୋ ପରାଣେ ଦାରୁଣ ଧକ୍କା ।

ଯା ମୁଖ ଅନାଇ ଅନ୍ତିମ ସଙ୍କେତ
ଦେଇ ଲଭିଥାନ୍ତି ଶେଷ ସାନ୍ତ୍ୱନା;
ମୋ ନେତ୍ର-ଲେଖକେ ସତ୍ୟ ସରଳତା
ନ ଦେଖି ଦେଖେ ସେ ନୀଚ ଛଳନା ।

ଯାର ଗଉରବେ ମୋ ଭାଗ୍ୟ ବିଭବ
ଯା'ର କୃତିତ୍ୱ ଏ ପ୍ରାଣ ଉଲ୍ଲାସେ,
ମୋର ଉପଯୋଗେ ସେ ଯେବେ କାତର
ଏ ଜୀବନ ଆଉ କି ସୁଖ ଆଶେ ?

ଜୀବନ କି ଖାଲି ନିରାଶାର ଡାଲି
ମରୁ-ମରୀଚିକା ସେନେହ ପ୍ରୀତି,
ତେବେ କି ଆଶାରେ ଜନ୍ମ ଏ ସଂସାରେ
ପର ଲାଗି ନର ମରୁଛି ନିତି ?

ପ୍ରେମ ପଥ ସତ୍ୟେ, ସତ୍ୟ ସୁଖ ପାଏ
ପ୍ରେମ ନ ଜାଣଇ କେବେ ଶୋଚନା;
ଚିତ୍ତୃଜନେ ହୃଦେ ପ୍ରେମିକ ସମ୍ମୁଖ
ହେଲେ ହୋଉ ପଛେ ଘୃଣୁ ଗଞ୍ଜଣା ।

ମୋ ପ୍ରେମ କି ସତେ କେବଳ ଛଳନା
ଲୋଡ଼େ ଅଲକ୍ଷିତେ ଆପଣା ସୁଖ ?
କରୁଛ କି ମୃଦ୍ଧି ଆତ୍ମ-ପ୍ରବଞ୍ଚନା ?
ଯେଣୁ ମୋ ମନେ ଏ ଦାରୁଣ ଦୁଃଖ !

ଲଭିଅଛ ଏବେ ଆତ୍ମ ପରିଚୟ
ଲଭି ଅଛ ମୋର ହୃଦ କାଳିମା,
କର ପ୍ରାଣସଖା ତୀବ୍ର କଶାଘାତ
ପରଖ ଏ ହୃଦ-ସଦନ-ସୀମା ।

ବିଷାକ୍ତ ନୟନେ ମୋ ସରଳ ପ୍ରାଣେ
ଦେଖ ଯେବେ ସଖା କପଟ-କାଳି,
ଆଖି ପୋଛି ଦେଖ ମୋ ହୃଦେ ତୋ ହୃଦ
ଆତ୍ମ ପରିଚୟେ ନ ଦିଅ ଗାଳି ।

ଗାଳି ଗଞ୍ଜନାକୁ ନାହିଁ ମୋର ଛଳ
ତୁମ ଅନୁତାପ ଏକା ଶୋଚନା;
ପାଅ ଯେବେ ସୁଖ ସେ କଟୁ ବଚନେ
ଦେବ ତା ମୋ ହୃଦେ ମଧୁ ମୂର୍ଚ୍ଛନା ।

ଫୁଲ ପରି ପ୍ରେମ ଝାଉଁଲେ କି ବନେ
ପ୍ରେମ ଯେ ଅନ୍ତର ଅକ୍ଷୟ ଧାର;
ଦୂର କଲେ ମୋତେ ହେବ କି ଅନ୍ତର
ତୁମେ ଯେ ମୋ ପ୍ରାଣ-ପ୍ରଣୟ-କାର !

ଏ ଜୀବନେ ପ୍ରେମ ନୁହେଁ ଅବସାନ
ଅନ୍ୟସ୍ଥାନେ ପୁଣି ହେବ ତ ଦେଖା,
ଶୁଙ୍ଘ ନେବେ ତହିଁ ଦେଖିବ ମୋ ହୃଦେ
ପ୍ରେମ ରସାଶ୍ରିତ ଅମୃତ ଲେଖା ।

ପ୍ରେମେ ଅବଗାହ ନିଜ ପରିଚୟ
ପାଇଅଛି ମୁଁ ଏ କ୍ଷୁଦ୍ର ଜୀବନେ;
ମୋ ହୃଦ-କଲ୍ଲୋଳ ଉଛୁଳେ ଉଲ୍ଲାସେ
ଜଳେ ସ୍ଥଳେ ଫଳେ ଫୁଲେ ଗଗନେ ।

ଶତ ଆବର୍ଜନା ସହସ୍ର ତାଡ଼ନା
କିବା ଶତ ସ୍ନିଗ୍ଧ ସୁମନ ହାର,
ଏ ପ୍ରେମ-କଲ୍ଲୋଳେ ସମାନ ସକଳେ
ପରମ ସାଦର ସ୍ନେହ-ସମ୍ଭାର ।

ନିଜକୁ ଭୁଲି ମୁଁ ପାଇଅଛି ସଖା
ନିଜ ପରିଚୟ ନିଜ ତ୍ରୁପଣ,
ଏବେ କଶାଘାତେ ଜନମିଛି ମୋର
କଠୋର ପ୍ରହାର-ସହା ଶକଣ ।

ଗାଢ଼ ଆଲିଙ୍ଗନ ସ୍ମୃତିରୁ ଚୁମ୍ବନ
ଅଶ୍ରୁଧାର ଯେଉଁ ପ୍ରେମ ବ୍ୟଞ୍ଜନା,
ଲୋହିତ ଲୋଚନ ନିଷ୍ଠୁର ବଚନ
ଓଲଟ ଈକ୍ଷଣେ ତାର ଲାଞ୍ଛନା ।

ଏ ବେନି ଭାବର ହେଲି ଅନୁଭବ
ଅଳପ ଦିବସେ ତୁମ ସଙ୍ଗତେ;
କେତେ ସୁଖ ଦୁଃଖ ସୁହାସ ଲୋତକ
ନିଭାଇଲି ଏହା ଆଙ୍ଗେ ଗୁପତେ ।

ତପ ଦୋଷାନଳେ ବିଦଗ୍ଧ ହୋଇ
ଝଲସୁଛି ଦ'ଗ୍ରଣେ ଏ ମୋ ପରାଣ,
ଲୁଣ୍ଠିଲି ଜଗତେ ଦ୍ୱେଷ ଦୋଷ ଦେଇ
ପ୍ରେମମୟଙ୍କର ପ୍ରେମ ପ୍ରଦାନ ।

ତାଙ୍କ ପ୍ରେମ-ରାଜ୍ୟ ନାହିଁ ଅସୁନ୍ଦର,
ଅସତ୍ୟ, ଅନ୍ୟାୟ, ଅଶୁଭ ଦ୍ୱନ୍ଦ୍ୱ,
କି ମୋର ଭାବନା ମୋ ପ୍ରାଣ ପ୍ରବାହ
ଭେଟି ଅଛି ଆଜ ସେ ପ୍ରେମସିନ୍ଧୁ ।



# ପାର୍ବତୀ ତପସ୍ୟା
## (ରାଜର୍ଷି ବଙ୍କିମ ରଚନାରୁ)

ସେ ସୁକୁମାରୀ ସକଳ ସୁଖ ତ୍ୟାଗ କରି
ପ୍ରାଣପତି ପାଦପଦ୍ମ ହୃଦୟରେ ଧରି ।

ଏକାଗ୍ର ମାନସା ହୋଇ ତପକୁ ଆଚରେ
ସହସ୍ର ବତ୍ସର ଫଳମୂଳ ଭୋଜନରେ ।

ଶାକାହାରରେ ଶତାବ୍ଦ ଶୁଷ୍କ ବିଲ୍ୱପତ୍ର
ମାତ୍ର ଖାଇ ତ୍ରିସହସ୍ର ବର୍ଷ କଲେ ପୂର୍ଣ୍ଣ ।

ତା ପରେ ପର୍ଣ୍ଣକୁ ତେଜି ଅପର୍ଣ୍ଣା ନାମରେ
ଖ୍ୟାତା ହୋଇ କେତେ କାଳ ସଲିଳ ପାନରେ ।

ତପୁରେ କେତେ କାଳ ବାତାହାରେ କାଟିଲେ
ପରଶେଷରେ ନିରାହାର ବ୍ରତକୁ କଲେ ।

ଅତି ଶୀର୍ଣ୍ଣା ଅପର୍ଣ୍ଣାକୁ ଅନାଇଁ ଗଗନେ
ଧାତା ଗମ୍ଭୀର ବାଣୀ ପ୍ରକାଶିଲେ ଏସନେ ।

ଗିରିରାଜ-କୁମାରି ! ତପ ଆଉ ନ କର
ତୋ ତପ ପରି ତପ ଜଗତେ ଅଗୋଚର ।

ତୋ ମନୋରଥ ସଫଳ ହେଲା ନିଶ୍ଚୟରେ
ବରିବୁ ଅବିଳମ୍ବେ ଶିବ ସହିତରେ ।

ମୁହିଁ ବନ୍ଦ, ପ୍ରତେ କର ମୋହର ଗିରକୁ
ପିତା ଡାକିବା ମାତ୍ରେ ଯାଅ ନିଜ ପୁରକୁ ।

ଯେବେ ତୋ ସ୍ୱପ୍ନେ ଏକ ତପସ୍ୱୀ ଦେଖା ଦେବ
ତେବେ ତୋହର ମନୋରଥ ସମ୍ପୂର୍ଣ୍ଣ ହେବ ।

ଏ ବାଣୀ ଶୁଣି ପାର୍ବତୀ ଅତି ପ୍ରମୋଦିତ
ଏବେ ମନ ଦେଇ ଶୁଣ ମହେଶ ଚରିତ ।
ଯେବେ ସତୀ କୋପରେ ତନୁକୁ କଲ ତ୍ୟାଗ
ତେବେ ଶଙ୍କର ଅତିକୁ ଘୋଟିଲା ବିରାଗ ।

ସଦାଶିବ ସଦା ଜପେ ରଘୁପତି ନାମ
ଶୁଣଇ ମାତ୍ର ସୀତା-ନାୟକ-ଗୁଣଗ୍ରାମ ।
ଧରଣୀରେ ଭ୍ରମି ଗତ ମଦ ମୋହକାମ
ବାମଦେବ ସଦାନନ୍ଦ ଗୁଣ-ଗଣ-ଧାମ ।

କେଉଁଠାରେ ଜ୍ଞାନଦାନ କରଇ ଯୋଗୀଙ୍କୁ
କେଉଁଠାରେ ରାମକଥା କହଇ ମୌନୀଙ୍କୁ ।
ସେ ହେଲେହେଁ ସଦାନନ୍ଦ କାମନା ରହିତ
ଭକ୍ତ ବିଯୋଗ ଦୁଃଖରେ ହୁଅଇ ଦୁଃଖିତ ।

ରାମଭକ୍ତ ଶିବ ଅଛେ କ୍ରମରେ ଦେଖିଲ
ଏ ରୂପରେ ବହୁତ ସମୟ ବିତିଗଲା ।
ଜାଣି ମହାଦେବ ଗାଢ଼ ଭକ୍ତ ସାଧୁ ବ୍ରତ
ଶ୍ରୀରାମ ପ୍ରତ୍ୟକ୍ଷ ହୋଇ ବୋଇଲେ ଏମନ୍ତ:—

ତୁମ୍ଭ ଧନ୍ୟ ଆଚରିଲ ଅଲୌକିକ ବ୍ରତ
ବ୍ରହ୍ମଚର୍ଯ୍ୟ ଦୀକ୍ଷାରୁ ହୁଅ ଏବେ ବିରତ ।
ସତୀ ହୈମବତୀ ହୋଇ ଜନ୍ମିଛି, ତାହାର
ପାଣିଗ୍ରହଣ କରି ହର ସନ୍ତାପ ଭାର ।

ତା ଶୁଣି ହର କହିଲେ ଆଦେଶ ତୋହର
ପରମ ଧର୍ମ ଅବଶ୍ୟ କର୍ତ୍ତବ୍ୟ ମୋହର ।

ମାତୃ ପିତୃ ଗୁରୁ ପ୍ରଭୁ ପ୍ରଦତ୍ତ ଆଦେଶକୁ
ନଷ୍ଟେ ପାଳିବାକୁ ହେବ ନ କର ପାଞ୍ଚକୁ ।
ତୁହ ଜଗତରେ ମାତା ପିତା ଗୁରୁଦେବ
ତୋର ଆଜ୍ଞାକୁ କିପରି ଲଙ୍ଘିବାକୁ ହେବ ।

ଏମନ୍ତ ଭକ୍ତ ଜ୍ଞାନ ଧର୍ମ ଯୁକ୍ତ କଥନ
ଶିବ ମୁଖୁଁ ଶୁଣି ଶ୍ରୀରାମ ଲଭି ତୋଷଣ ।
ବୋଇଲେ ଫଳିଲା ତ ଏବେ ତୋହର ପଣ
ବିଳମ୍ବ ଆଉ ନ କର ପାଳ ମୋ ବଚନ ।

ଏତେ କହି ଶ୍ରୀରାମ ଅନ୍ତର୍ଦ୍ଧାନ ହୋଇଲେ
ଉପଗତ ସପ୍ତର୍ଷିଙ୍କୁ ଶଙ୍କର ବୋଇଲେ ।

---

# ଯୁଧିଷ୍ଠିରଙ୍କୁ ଦ୍ରୌପଦୀଙ୍କ ଉଦ୍‌ବୋଧନ

## ( ବାଲୁକେଶ୍ୱର ମହାପାତ୍ର )

ଚୀର ବସନଧୃତ ପଥେ ନରଦେବ
ବୁଲୁଛ ଅନାଥ ଭଳି
ତଥାପି ହୃଦୟେ କୋପାନଳଶିଖା
ନ ଉଠେ କପାଳେ ଜଳି ।

କ୍ରୋଧପରିପୂର୍ଣ୍ଣ ବିପଦ କାରଣ
ଲୋକଙ୍କୁ ସତତ ଡର
ସ୍ନେହପରିପୂର୍ଣ୍ଣ ଅମର୍ଷ-ବିହୀନ
ନ ଲଭେ ଶତ୍ରୁ ଆଦର ।

ଲୋହିତ ଚନ୍ଦନ— ଚର୍ଚ୍ଚିତ ଶରୀର
ରଥଗୃହୀ ବୃକୋଦର
ହୋଇଛନ୍ତି ଆଜି ଧୂଳିଧୂସରିତ
ବୁଲନ୍ତି ଗିରି କନ୍ଦର ।

ଏ ବିଷମ ଦୃଶ୍ୟ ଦେଖିଲେ ଅବଶ୍ୟ
ହୃଦୟ ଯାଆନ୍ତା ଫାଟି
ଏ କିବା ରହସ୍ୟ ସତ୍ୟଧନ ! ତବ
ମନ ହେଉ ନାହିଁ ଶାନ୍ତି ।

ବାସବ ପ୍ରତିମ ଯେଉଁ ଅର୍ଜୁନ
ଜିଣିଛନ୍ତି ଉତ୍ତର କୁରୁ
ଅରପିଲେ ଆଣି ପ୍ରଭୂତ ହିରଣ୍ୟ
ବିଜିତ ଅରାତି ପୁରୁ ।

ସେ ଅର୍ଜୁନ ଅଜ ବଲ୍‌କଲ ବସନ
ଅଣୁଛନ୍ତି ତୁମ୍ଭ ପାଇଁ
ତଥାପି ତୁମ୍ଭର ଶନ୍ତୁ ପ୍ରତି ତଳେ
କ୍ରୋଧ ଜାତ ହେଉନାହିଁ ।

ବନଭୂମି ଶଯ୍ୟା— କଠିନ-ଶରୀର
ରୁକ୍ଷ କେଶ ମାଦ୍ରୀ ସୁତ
ଦେଖାନ୍ତୁ କରେଣି ହେଉ ନାହିଁ କିପାଁ
ଧର୍ମ୍ମ ସଂଯମଚ୍ୟୁତ ।

କଳ ହେଉ ନାହିଁ ଉପସ୍ଥିତ କ୍ଷେତ୍ରେ
ତୁମ୍ଭ ହୃଦୟର କଥା
ଚିନ୍ତା କଲେ ତବ ବିଷମ ବିପଦ
ପାଡ଼େ ହୃଦ ମନୋବ୍ୟଥା ।

ଯେଉଁ ସୁକୁମାର ତନୁ ବହୁ ମୂଲ୍ୟ
ଶଯ୍ୟା ମଣ୍ଡୁଥିଲ ଦିନେ
ନିଜ ଦୋଷେ ଏବେ ଲୋଟୁଛି ସେ ତନୁ
କୁଶ ବହୁଳ ବିପିନେ ।

ପବିତ୍ର ପ୍ରଭାତେ ଜାଗୁଥିଲ ପୂର୍ବେ
ମଙ୍ଗଳ ଗୀତ ନିସ୍ୱନେ
ବିପଦ ଦୁର୍ଦ୍ଦିନେ ଜାଗୁ ଅଛ ଏବେ
ଶିବାରୁତେ ଘୋର ବନେ ।

ଦିବ୍ୟ ଶାଳଅନ୍ନେ ବଢ଼ିଲ ଯେ ତନୁ
ରାଜ ଅବରୋଧେ ଥାଇ
ଯଶ ସଙ୍ଗେ ଏବେ କୃଶତା ଭଜୁଛି
ବନ୍ୟ ଫଳ ମୂଳ ଖାଇ ।

ମଣିପୀଠଶାୟୀ— ରାଜ-ଶିରଃ-ସ୍ପୃଷ୍ଟ—
ପଦ୍ମରେ ରକ୍ତ ଚରଣ
କରୁଅଛୁ ଏବେ ମୃଗଖଗନଶିଖ
—ହିଂସ୍ରବନେ ବିଚରଣ ।

ଶତ୍ରୁକୃତ ଯେଣୁ ଏ ଦଶା ତୁମ୍ଭର
ଶାନ୍ତି ନୁହେ ମୋର ମନ
ପର-ପରାଭବ ସମରପ୍ରାଙ୍ଗଣେ
ମାନୀପକ୍ଷେ ମାନଧନ ।

ଶାନ୍ତ ପରିହର ଶତ୍ରୁ ବଧ ପାଇଁ
ଏଣୁ ହୁଅ ତତ୍ପର
କ୍ଷାତ୍ରତେଜ ଏବେ ଅଙ୍ଗୀକାର କର
କୁରୁକୁଳ-ପୁରନ୍ଦର ।

ତୁମେ ସିଦ୍ଧି ସିନା ଲଭନ୍ତି ମୁନିଏ
ହୋଇ ସ୍ପୃହାବିରହିତ
ଏ ଭଳି ଉପାୟେ ସିଦ୍ଧି ଲୋଡ଼ିବାର
ରାଜା-ପକ୍ଷେ ଅନୁଚିତ ।

ଏପରି ଦୁଃସହ ପରାଭବ ଲଭି
ତୁମ୍ଭ ପରି ଯଶୋଧନ
ଶାନ୍ତି ଲଭ କଲେ କେ ଆଉ ରଖିବ
ମନସ୍ୱିତା-ମାନଧନ ।

ଅଥବା ନିରସ୍ତ— ପରାକ୍ରମ ହୋଇ
ବସୋର ରାଜଗରିମା
ଚିରକାଳ କ୍ଷମା ଆଚରିବା ମଣି
ସୁଖର ଚରମସୀମା ।

ଫିଙ୍ଗି ଦେଇ ତେବେ କ୍ଷତ୍ରିୟ ସମ୍ବଲ
ରାଜଚକ୍ର ଧନୁଶର
ଶିରେ ଜଟା ବାନ୍ଧି ଅଗ୍ନିରେ ଆହୂତ—
ଦାନେ ହୁଅ ତତ୍ପର ।

ଅନୁଗତ ତବ ଧାତ ଶତ୍ରୁଠାରେ
ସମୟ୍-ସୀମା-ପାଳନ
ବଳିଗର୍ବି ନୃପ କପଟେ ଝଟିତ
ବଧାନେ ସନ୍ଧି ଦୂଷଣ ।

କ୍ଷୁଦ୍ର ପାରିବାରେ ବଦ୍ଧବତେ ହୋଇ
ପ୍ରଦୋଷେ ଶିଥିଳ-କର
ବପଦ-ବପାକେ ରଜନୀ ପ୍ରଭାତେ
ହଦେ ହେଲେ ଦୀନକର ।

ଯେପରି ସେକାଳେ ଶ୍ରୀଶ୍ରୀ ସୁକୁମାରୀ
ପୁଣି ବନ୍ଦେ ତା ଚରଣ
ସେହିପରି ଏବେ କୁରୁ-ରାଜଲକ୍ଷ୍ମୀ
ତୁମ୍ଭଙ୍କୁ କରୁ ବରଣ ।

---

# ପୃଥ୍ୱୀରାଜଙ୍କ ପତ୍ର

## ( ରାୟସାହେବ ପଦ୍ମଚରଣ ପଟ୍ଟନାୟକ )

### ପଦ୍ମପାଖୁଡ଼ା

ପ୍ରତାପ, ପ୍ରତାପ ବୀର ସ୍ୱଦେଶ ମଣ୍ଡନ
ଷାତ୍ରକୁଳ କାନ୍ତିବୀର୍ଯ୍ୟ ହେ କୀର୍ତ୍ତିଭାସ୍ୱର,
ରାଜପୁତ-ବଂଶରତ୍ନ ହେ ଶତ୍ରୁମର୍ଦ୍ଦନ,
କେମନ୍ତେ ଜାଣିବ ଅବା କେଉଁ ଲେଖନୀରେ
ଲେଖିବ ଏ ମନସ୍ତାପ ! —ବକ୍ଷ ଯାଏ ଫାଟି,
ଚକ୍ଷୁର ରୁଧିର ସ୍ରୋତ ଦାହ କରେ ଅଙ୍ଗ,
ହସ୍ତପଦ ଏ ସମ୍ବାଦେ ଆଜି ହେ ଅବଶ,
ବଚନ ନ ସ୍ଫୁରେ ମୁଖେ, ନଇଁ ଯାଏ ମଥା,
ଅଳସ, ଅକ୍ଷମ, ଅସ୍ଥି ଆଜି ଏ ଜୀବନ ।
କେମନ୍ତେ ମୁଁ ବୁଝିବ ବା ସତ୍ୟ ଏ ସମ୍ବାଦ ।
ସତ୍ୟ ଏ ସମ୍ବାଦ ଅବା ଶତ୍ରୁର କାହାଣୀ
—ହୀନବୁଦ୍ଧି ଜନଶ୍ରୁତି ଘୋଷେ ଏ ବାରଣ—
ନିଭାଇବା ଲାଗି ଶେଷ କ୍ଷୀଣ ସୁଖ ଆଶା
ରାଜପୁତ ବକ୍ଷେ କର ଏ କୂଟ ରଚନା ?
କିପରି ପ୍ରତ୍ୟୟ ଯିବ, କେଉଁ ଧନ ଦେଇ
କିଣିଲା ଏ କ୍ରେତା, ସେହି ମହାମୂଲ୍ୟ ମଣି !
କାହିଁ ବା ସଂସାରେ ଧନ, କାହିଁ ବା ସେ ଧନୀ
କିଣିବ ଏ ମହାଧନ,—ଅତୁଳ୍ୟ ସମ୍ପତ୍ତି ।
ଯେ ଧନେ କ୍ଷତ୍ରିୟକୁଳ-ସାମନ୍ତ-ବୀରତ୍ୱ,
ରାଜପୁତ ରମଣୀର ସତୀତ୍ୱ-ରତନ
କିଣିଛି କପଟୀ, ତାହା ପ୍ରତାପର ପାଶେ
କବା ମୂଲ୍ୟହୀନ, ଛାର, ହୀନ-ପ୍ରଲୋଭନ ।

ହିନ୍ଦୁଙ୍କ ହୃଦୟ ଅବା ଫଳିଛି ଏଥର,
ସେ ମଣ୍ଡିମାତଙ୍ଗ ଅବା ଛଳେ କରିଗଲେ
କପଟୀ କପଟ ପାଶେ ପଡ଼ି ଅଛି ଧରି ।
ରାଜପୁତ ଗିରିଶୃଙ୍ଗେ ସେ ହସ୍ତୀଶରାଜ,
ପଦବିକ୍ଷେପରେ ଯାର କେଶରୀ ଘୂର୍ଣ୍ଣନେ
ସରୋଷ କଟାକ୍ଷେ, ଦମ୍ଭେ ବୀରତ୍ୱ ହୁଙ୍କାରେ
କମ୍ପୁଥିଲ ଶତ୍ରୁହୃଦ ! ସେ କି ଆଜି ଶେଷେ
ଶତ୍ରୁ-ପଦାଙ୍କଳେ ହେଲା ଆପେ ପୋଷା ଶ୍ୱାନ ।
ଭୁଲିଲ କ୍ଷଣକେ ଆଜି ସବୁ ଶୌର୍ଯ୍ୟ ବୀର୍ଯ୍ୟ ।
କୁଳସମ୍ମାନରେ ସେ କି ଦେଲା ଜଳାଞ୍ଜଳି,
ବକ୍ଷ ଚିରି ରକ୍ତସ୍ରୋତ ଢାଳି ଗିରିଗର୍ଭେ
ହୋଇ ଆଜି ସ୍ୱାନବାର୍ଯ୍ୟ ପଶିଲା ଶରଣ ।
—କେମନ୍ତେ ବା ସେ ରୁଧିରଧାରା ଅଙ୍ଗେ ଦକ୍ଷ
ଶତ୍ରୁ ପଦପ୍ରାନ୍ତେ ସେହୁ ରଖନ୍ତା ତା ଶିର ?

ସେ ରୁଧିର ସାନ୍ଦ୍ରତେଜେ ମହାତେଜସ୍କର
ଏ ସ୍ୱାନ ଆଗ୍ନିରେ ଘୃଣା ଲଜ୍ଜା ଅପମାନେ
ଆଜି ବୀରବକ୍ଷେ ତାର ବସ୍ତୁବ ତାଣ୍ଡବ
ରଖିଥାନ୍ତା ମଥା ଉଚ୍ଚେ ଗୌରବେ ଗରବେ ।
ହେ ପ୍ରତାପ, କି କହିବ କି ବା ଗର୍ବଭରେ
ଶୁଣୁଥିଲ ଏଥି ତବ ଗୌରବ-କାହାଣୀ ।
କହନ୍ତି ସାମନ୍ତେ ଯେବେ ଦର୍ପଭରେ ବସି
ଏକାକୀ ପ୍ରତାପ ଶତ ସହସ୍ରର ସମ,
ତା ନୟନେ ବିଦ୍ୟୁତକ୍ଷେପଣ, ବକ୍ଷେ ସିଂହବଳ,
ଶରୀରେ ଅମିତ ତେଜ, ଅଜେୟ, ଅଭୟ,—
ସରିଛି ମୋ ସାନ୍ଦ୍ରତେଜ ଦାସତ୍ୱ ବନ୍ଧନେ,
ଦେବେହେଁ ମୋ ଦକ୍ଷ ଦର୍ପେ ଉଠୁଥାଉ ନାଚ ।

ଶୁଣେ ଯେବେ ସିଂହପର ଶୃଙ୍ଗୁଁ ଶୃଙ୍ଗାନ୍ତରେ
ପୁତ୍ର କନ୍ୟା ସଙ୍ଗେ ଗେଲି ପ୍ରାଣପ୍ରିୟା ସତୀ
ସ୍ନେହେ ଯେହ୍ନ ନାରୀ, ସୀମେ ପୁରୁଷର ସଭ ।
ପ୍ରତାପ ଭ୍ରମଇ ସୁଖେ ସ୍ୱଦେଶ-ଗୌରବେ
ଏଡ଼ି ଅବହେଳେ ଶତ୍ରୁ ଶଠମାୟା-ଜାଲେ,
ଶ୍ୱାପଦସଙ୍କୁଳ ବନେ ଶ୍ୱାପଦଙ୍କ ଭୟେ
ସନ୍ତାନେ ବିଟପୀଶାଖାବଲମ୍ବୀ ଅର୍ଗଳେ
ନୃଭମାଳେ ବନବାସୀ ବର୍ବରଙ୍କ ପର
ରକ୍ଷି ରଜନୀରେ ଆପେ ଘୂରୁଅଛ ବନେ
ସାଧିବାକୁ ଆତ୍ମବ୍ରତ, ବକ୍ଷ ଫାଟେ ମୋର,
କିବା ମହାଭୁବେ ମୋର ପୂରିଯାଏ ପ୍ରାଣ ।
କୃତାଞ୍ଜଳି-ପୁଟେ ଧୀରେ ଜଣାଏ ମୋ ଅଳି.
ବାହୁପାଶେ, ଢାଳିବାକୁ ତବ ପୁଣ୍ୟ ଶିରେ
ଅନନ୍ତ ଆଶିଷଧାର ସ୍ୱରଗ ସମ୍ପଦ
ରକ୍ଷିବାକୁ ତବ ଟେକ ଏ ମହୀମଣ୍ଡଳେ
ଉଜ୍ଜ୍ୱଳ ମିବାର-ଶ୍ରୀ ମିବାର-ଗୌରବ
'ବିପଦ ପ୍ରତାପ-କରେ କ୍ରୀଡ଼ନକ ସମ,
ଭୟ, ପ୍ରଲୋଭନ କି ବା ନ ଜାଣେ ପ୍ରତାପ ।'
ଶୁଣେ ଯେବେ ଜନମୁଖେ, କି ଆଶା ସାହସ
ଏ ମୁମୂର୍ଷୁ ପ୍ରାଣେ ଉଠେ ! କେତେ ମୁଁ ଅଟ୍ଟାଳି
ତୋଳଇଁ ଆକାଶେ । କେତେ ମଧୁର ସ୍ୱପନେ
ମୁଗ୍ଧ ହୁଏ ପ୍ରାଣ, ତାହା କି କହିବ ଆଜି ।
ଘାଟିଯୁଦ୍ଧେ କି ସାହସ, କି ସଂଯମ, ବଳ,
କିବା ସମରନୈପୁଣ୍ୟ, ହେ ରାଜ-ସନ୍ୟାସୀ,
ଷାସକୁଳରବି, ତବେ ଦେଲ ହେ ଦେଖାଇ ।
ସ୍ୱଦେଶର ସ୍ୱାଧୀନତା କିବା ମହାଧନ,
ସେ ଧନ ହରାଇ ଦେଶ କି ହୀନ ଦୁର୍ବଳ,

ଜଡ଼ବା ଦ୍ୱେଷୁ, ପରପଦାନତ, ଶିକ୍ଷାହୀନ ।
ସେ ଧନ, ସେ ରାଜଶିକ୍ଷା ଲଭ ଆଶେ ବାର
ଶତ୍ରୁଁ ଶୋଣିତ ଦେଇ କରନ୍ତ ତର୍ପଣ
ପିତୃ ପିତାମହଙ୍କର । ସେ ଗୌରବଗାଥା,
ସେହି ବୀରତ୍ୱ-କାହାଣୀ କାଳେ କାଳେ ଭବେ
ସଞ୍ଚରିବ ଲୋକମୁଖେ । ପଣ୍ଡିତପାବନୀ
ପୁଣ୍ୟ ଗଙ୍ଗାଧାର ସରି ଦେବ ମହାଶକ୍ତି,
ସାହସ ଉତ୍ସାହ ଦୀନହୀନ ମୃତପ୍ରାଣେ ।
ପରାଧୀନ କେତେ ଜାତି ସେ ଗାଥା ସ୍ମରଣେ
ଦାସତ୍ୱଶୃଙ୍ଖଳୁଁ ଆପେ ଲଭିବେ ମୁକତି
—ଯୁଗେ ଯୁଗେ ସେହି କଥା ଅମୃତର ସରି !
ଦ୍ୱାବିଂଶ ସହସ୍ର ସୈନ୍ୟ ସଙ୍ଗେ ଘେନି ବୀର,
ସ୍ୱକୁଳାଙ୍ଗାର ହୀନ ମାନସିଂହ ସଙ୍ଗେ
ସେଲିମକୁ ଯେ ଲାଞ୍ଛନା ଦେଇଛ ସଂଗ୍ରାମେ,
ସ୍ୱର୍ଣ୍ଣାକ୍ଷରେ ଲେଖା ହେବ ପୃଥିବୀ-ବକ୍ଷରେ ।

ଯେ ଅପୂର୍ବ ଆତ୍ମୋତ୍ସର୍ଗ ରଣୋନ୍ମାଦେ ମାତି
କ୍ଷିପ୍ତ ହିନ୍ଦୁ ଯେ ଘାଟେ ଧୂରିଲ ପ୍ରତାପ,
ତାହାର ତୁଳନା ସେହୁ । ସେହିଦିନୁଁ ଘାଟ
ଭାରତବାସୀର ହେଲା ମହାତୀର୍ଥସ୍ଥଳ ।
ଯେବେ ଭୂଭାରତେ ହେବେ ଆର୍ଯ୍ୟ ହୀନବଳ,
ପରମୁଖାପେକ୍ଷୀ, ପରପଦାଙ୍କାନୁସାରୀ,
ଏ ପବିତ୍ର କ୍ଷେତ୍ରେ କରି ତବ ପ୍ରାଣପୂଜା
ପାଇବେ ଚେତନା, ପୁଣି ଆର୍ଯ୍ୟନାମେ ଖ୍ୟାତି
ଅବନୀ ପୃଷ୍ଠରେ ଦିନେ ଲଭିବେ ପ୍ରତିଷ୍ଠା
ତବ ପୁଣ୍ୟ ସ୍ମୃତିପୂତ ଘାଟର କାହାଣୀ
କାଳେ କାଳେ ନର୍ତ୍ତିବ କବିର କଳ୍ପନା,

ସମରବିଳାସୀ ବୀର-ଧମନୀ-ଶୋଣିତ,
ଦେଶଭକ୍ତ ଶ୍ରାନ୍ତପ୍ରାଣେ ଦେବ  ଅଗ୍ନିକଣା ।
ହିନ୍ଦୁର ଭରସା ହିନ୍ଦୁ, ହିନ୍ଦୁ ଶତ୍ରୁ ହିନ୍ଦୁ,
ହିନ୍ଦୁ ବିନା କା'ର ସାଧ୍ୟ ଏ ମହୀମଣ୍ଡଳେ
ଏ ଭାରତେ—ଏ ଦୁର୍ଗମ ଦୁର୍ଗେ—ଦେବ ପାଦ,
ପାପ୍ପି ଅମଙ୍ଗଳ ପିଣ୍ଡେ ରକ୍ଷିବ ପରାଣ ?
ଗଲେ ପୃଥ୍ୱୀରାଜ, ଗଲା ଦ୍ରୋହୀ ଜୟଚନ୍ଦ୍ର
କାଳସାଗରରେ ଭାସି ବୁଦ୍‌ବୁଦ ସମାନ,
ଥାନେଶ୍ୱରେ ପୋତା ହେଲା କଳଙ୍କର ସ୍ତମ୍ଭ
—ଦେଶ-ଦ୍ରୋହୀ ଭ୍ରାତୃହନ୍ତା ବିଜୟ ନିଶାଣ ।

ସେ ପାପର ଫଳେ ଅସ୍ତ ଗୌରବ—ତପନ
ଚିରକାଳ ହିନ୍ଦୁ ମୁଖେ ବୋଳି ଦୁଃଖ-ମସୀ,
ସେ କଳଙ୍କ ସ୍ରୋତେ ଭାସିଗଲା କେତେ ଶୌର୍ଯ୍ୟ,
କେତେ ବୀର୍ଯ୍ୟ, କି ବୀରତ୍ୱ କେତେ ବା ସାମର୍ଥ୍ୟ
କେତେ ଯୁଗ ଯୁଗାନ୍ତର ତପସ୍ୟାର ଫଳ
ଶ୍ରୀହୀନ ଅନାଥ କରି ଏ ପୁଣ୍ୟ ଭାରତ ।

କି ଅସହ୍ୟ ତପୋବଳେ ବାପ୍‌ପା-ରାଓ କୁଳେ
ଜନ୍ମିଛି, ହେ ଦେବ, କରି ସେ କୁଳ ଉଜ୍ଜ୍ୱଳ ।
ରାଜପୁତ ବଂଶେ ଅବା କି ଅଛି ହେ ଆଜି
ତବ ବିନା ? ସର୍ବେ କ୍ରୀତକ୍ଷୁଦ୍ର ମୁଦ୍ରାଖଣ୍ଡେ,
କେହି ବା ସ୍ୱବୃତ୍ତି ଲାଗି, କେହି ଭୂଖଣ୍ଡରେ
ପବିତ୍ର ଏ ବଂଶ ଯାର କାଳେ କାଳେ ଖ୍ୟାତି
ହେଲା କି କୁକ୍ଷଣେ ବୀର, ଚିର କଳଙ୍କିତ !
କି କହିବି ? ରାଜପୁତ-କନ୍ୟା ହେଲା ଆଜି
ପିତାଦେଶେ ଯବନର ଅଙ୍କ-ବିଳାସିନୀ ।
ସତୀତ୍ୱ-ସମ୍ମାନେ ଯେହୁ ଅଗ୍ନି ଦେଲେ ଡାଳି

କାହାର ଅନଳେ ଧାଈଁ ପତି-ଶ୍ରୀଚରଣ
ରଖିବାକୁ ପତି ପୁଣି ବଂଶର ଗୌରବ,
ସେମାନେ ଦେବାକୁ ଶତ୍ରୁ ଶତ୍ରୁ-ସିଂହାସନେ
ଲୋଭ୍ରା ହେଲେ ପଣ୍ୟ ରୂପେ ଯବନ-ବଜାରେ ।
ପିତା ପତି ପୁତ୍ରେ ହେଲେ ରମଣୀ-ବିକ୍ରେତା ।
ଏ ପାପର ଫଳ ଶତ୍ରୁ ଭୋଗିବ ମୁକର,
ଆପେ ଅବା ଆପଣାର ବଂଶ ଏ ଅନଳେ
ଦଗ୍ଧ ହୋଇ ଦିନେ ନଷ୍ଟେ ହେବେ ଛାରଖାର
ଭସ୍ମୁମୟ ! ଏ କପଟ, ଏ ବିଳାସ ଦିନେ
ଧରିବ ସହାରମୂର୍ତ୍ତି । ଏ କି ସ୍ୱଜୋଚିତ ?
ସଜାତ୍ୱ-ମର୍ଯ୍ୟାଦା ସାରି ସାଧେ ନିଜସ୍ୱାର୍ଥ !
ଏ ପାପେ କି ସିଂହାସନ ନ ଟଳିବ ଦିନେ ?
ଜାଣିଛ କି ଶତ୍ରୁ ଭୂମି ଚିରକାଳ ପାଇଁ ?
ଚଞ୍ଚଳା ସୌଭାଗ୍ୟ-ଲକ୍ଷ୍ମୀ ହେବେ କି ଅଚଳା ?
ସେ ବେଳେ ତ ଅକଳଙ୍କ ବଂଶ ହେବ ଲୋଡ଼ା
ସ୍ଥାପିବାକୁ ରାଜପୁତ ବଂଶ ଏ ଭାରତେ ।
ନରାଧମ ଭଗବାନ ଦେଲେ ଯେ କଳଙ୍କ
ପଙ୍କେ ଲେ ଛାପିଛି ତାହା ସମଗ୍ର ଏ ଜାତି;
ତବ ବିନା ହେ ପ୍ରତାପ, କିଏ ଅଛି ଆଉ ?
ରକ୍ଷ ଆଜି ବଂଶଶିଖୀ; ତୁମ୍ଭେ ତ ପାବକ;
ହୁଅ ହେ ପାବକ ପରି ଆଜି ଊର୍ଦ୍ଧ୍ୱଶିଖ;
ନ ଲୋଡ଼ ସଲିଳ ଧର୍ମ ନ ସରୁ ମହତ୍ତ୍ୱ ।
ସେ ମହତ୍ତ୍ୱ କାଳେ ହେବ ଚିର ସମୁଜ୍ଜ୍ୱଳ;
ବିସ୍ମୟେ ଦେଖିବ ବିଶ୍ୱ ଏ ଅପୂର୍ବ କୀର୍ତ୍ତି ।
କି ଅବା ପାର୍ଥିବ ଲୋଭ, ଲାଭ, ପ୍ରଲୋଭନ
ଭୁଲାଇବ ତବ ମନ, ହେ ବୀର ପ୍ରତାପ !

ସ୍ୱଦେଶୋଚିତ ପରିଚ୍ଛଦ ବସନ ଭୂଷଣ
ଅଶନ ଆସନ ସବୁ ଚିତୋରର ହିତେ
ତେଜିଛ, ନେଇଛ ଦୈନ୍ୟ ଆପେ ପ୍ରାଣ ଭରି
କି ମହା-ଗୌରବ ରୂପେ ନିଜ ମସ୍ତକରେ
ତୃଣାସନ, କୁଶଶଯ୍ୟା, ବନ୍ୟ ପର୍ଣ୍ଣପୁଟେ
ଚଳେ ଯାର ନିତ୍ୟକାର୍ଯ୍ୟ, ସେ ପ୍ରତାପ କିମ୍ବା
ପରପାଶେ ନତ କର ଆଜି ନିଜମଥା ।
ଏ ରହସ୍ୟ ଏ ଜଟିଳ ପ୍ରଶ୍ନର ସମାଧା
କେ କରିବ କାହିଁ ମୋତେ ଦିଶୁ ନାହିଁ ପାଶେ ।
ବାପ୍ପାରାଓ ଦାଦଲର ଯୋଗ୍ୟ ବଂଶଧର,
ହେ ସମର-ସିଂହ-କୁଳ-ଅମର-ନନ୍ଦନ,
କି କହିବ ମର୍ମବ୍ୟଥା ? ତୁମ୍ଭେ ମହାପ୍ରାଣ,
ଦେଖାଅ ଯାବତ ପିଣ୍ଡେ ବନ୍ଧେ ପ୍ରାଣବାୟୁ
ସେ ମହାପ୍ରାଣତା, ରହୁ କାଳେ କାଳେ ଭବେ
ଚିତୋରର ଭାରତର ଅକ୍ଷୟ ଗୌରବ ;
ତବ ଶୌର୍ଯ୍ୟପୂତ ଏହି ଗିରି ଅଗ୍ରବଳୀ
ଘୋଷୁ ତବ ଆତ୍ମୋତ୍ସର୍ଗ ଅତୁଳ ପ୍ରଭାବ
ନହି ଏ ଜଗତେ ଭବେ ଅଜେୟ ଅଭୟ ।



# ଗ୍ରାମଚଣ୍ଡୀରେ ସନ୍ଧ୍ୟା
## (ପଣ୍ଡିତ ନୀଳକଣ୍ଠ ଦାଶ)
### ଡୋଣାବେଁ

କି କରାଳ ଆଜି ରଜନୀ
ବହେ ଝଞ୍ଜା ପବନ
ତାରା ନ ଦିଶଇ ଗଗନେ
ଶୁଭେ ଘନ ଗର୍ଜନ ।

ମୂଷଳ-ଧାରାରେ ଝଟିକା
ଦିଏ କରୁଛି କେବେ
ଶୋଇ ପଡ଼ୁଛି ତ ବାପା ହେ
ଜାଣୁ ନ ଥିବ ଲବେ ।

ଆଜି ଯେ ଭୂଆଁ ରଖୁନଅଁ
କେଡ଼େ ସୁଖ ଶରଧା
ମାଆ ଭଉଣୀଙ୍କ ଆଦର
ନବ-ବସନ ପିନ୍ଧା ।

ମନେ ପଡ଼ୁ ନାହଁ ତାକୁ ହେ
ଲୁଚି ଯାଇଛୁ ନିଦ
ମାଆ ଭଉଣୀ ଏ ଭବନେ
ଭଜୁଥିବେ ବିଷାଦ ।

ଲୁଗାରେ ହଳଦୀ ଲଗାଇ
ଶୁଣୁ ଥିବେ ଜନନୀ
ପିଠାପଣା ଖାଉ ନ ଥିବ
ସୁଖେ ଆଜ ଭଗିନୀ ।

ପବନ ଝଙ୍କାରେ ଶୁଣୁ ସେ
ଥିବେ ଡାକ ତୁମ୍ଭର
ପଲକେ ପଲକେ ଚମକି
ହେଉଥିବେ କାତର ।

ଫାଟି ଯାଉଥିବ ଜାହାଜ
ତାଙ୍କ ହୃଦ ସାଗରେ
ନିରାଶାରେ ଆଖି ଚମକେ
ଥିବେ ସେହ୍ନ ଜାଗରେ ।

ଜନନୀର ଗୁରୁ ବେଦନା
ଭଗିନୀର ବିଷାଦ
ଘୁମର ସପନେ ଚମକି
ଭାଙ୍ଗି ଯିବଟି ନିଦ ।

ଶୁଅ ଶୁଅ ଧନ ଅଗ୍ରମେ
ଶୋଇ ଥାଅ ରେ ଶିଶୁ
ପଥଶ୍ରମ କରି ଆସିଛ
ଶ୍ରମେ ବିରାମ ମିଶୁ ।

× × ×

ରହ ରହ ବାଆ ବତାସି
ରହ ବରଷା-ଧାର
ଲୁଆଁ ରପୁନିଅଁ ହେବ ରେ
ଆଜି ରଜନୀ ସାର

ଉଠେ ଆଖି ଜଳ ଲହରୀ
ଭେଦ ତାରକାରାଜି
ନିଶାମଣି ଶୋହୁ ଗଗନେ
ମଣ୍ଡୀ ମୁକୁର ମାଜି

ସରଗୁ ରଜତ ଝରଣ
ଖେଳିଯାଉ ଭୂତଳେ
ସରସ ବାଲୁକା-ବିତାନ
ହସୁ ଜୋଛନା ଖେଳେ ।

( ପାଦପ ପତର ଗହଳେ
ଛଳ ଉଚ୍ଛୁଳ ଛଇ
ଦୂର ଚକ୍ରବାଳ ସୀମନ୍ତ
ଉଭା ମନ୍ଦର ତହିଁ ।
ପୁନଅଁ ଜୁଆର ପୁଲକେ
ଭରି ତଟିନୀ-ମୁଖ
ମୃଦୁଳଲହରୀ-ହିଲ୍ଲୋଳେ
ଗୃହୁ ଚନ୍ଦ୍ର ମୟୂଖ ।
ବହଳ ନୀ-ଉରସେ
ନଭ-ବିମଳ-ଭୂତି
ବନ୍ତଚୂଳେ ଶିଶୁ ଦେଖିବେ
ହୃଦ ଉଠିବ ନାଚି । )

ମୁହିଁ ଦିନେ ଶିଶୁ ଥିଲଇଁ
ମନେ ପଡୁଛି ମୋର
ବସି ଶିଶୁମେଳେ ଦେଖନ୍ତି
ଏ ବିଭବ ଭୂତିର ।

× × ×

କହ ସ୍ୱମଚଣ୍ଡୀ କହ ଗୋ
ସାକ୍ଷୀ ଏକା ତ ତୁହି
କେମନ୍ତେ ଏ ଭୂମି ଅସିଛି
କାଳ-ତରଙ୍ଗେ ବହି ।

ଆସିଥିଲେ କି ସେ ଏ ଭୂମେ
ଚୀନ ପରିବ୍ରାଜକ,
ଅନୁକୂଳ ଫଳକେ ଆଣି କି
ଥିଲେ ଏଥି ବାହକ ।

ବାଲେଶ୍ୱର ପୁର ବଣିକେ
ଏଥି ସିଂହଳ ପଥେ
ଭେଟିଥିଲେ କି ସେ ଡଗ୍ରସେ
ଜଳଦସ୍ୟୁ ବୋଇତେ ?
ଗୋରା ଜଳଦସ୍ୟୁ ଥିଲେ କି
ଏଥି ଲୁଟି ମନ୍ଦିରେ ?
ଲୁଣ୍ଠନ-ସମ୍ପଦ ସଞ୍ଚିଲ
ଏଥି ଜୀର୍ଣ୍ଣ ପ୍ରାଚୀରେ ।
ଚୁମ୍ବକ କି ଏଥି ଓଟାରୁ—
ଥିଲା ଜାହାଜମାନ ?
ଦେବତା କି ଏଥି ଥିଲେ ଗୋ
ଶୂନ୍ୟେ ବଲମ୍ବମାନ ?

ଏହି ସିଂହାସନ କେବେ କି
ଧରିଥିଲା ମୂରତି ?
ମୁଖଶାଳା-ପୀଠେ ହୋମ କି
କରୁଥିଲେ ଦ୍ୱିଜାତି ?
ଉତ୍କଳ-ରାଜନ-ସଭାଧ
ଏଥି ଥିଲା ଗୋ କାହିଁ ।
କେଉଁ ଉପବନେ ଆରାମ
କରୁଥିଲେ ସେ ରହି ।

କେତେ ଉଚ୍ଚ ଥିଲା ପ୍ରାଚୀର
କେତେ ତୁଙ୍ଗ ମନ୍ଦିର
କେଉଁ ଧ୍ୱଜଚକ୍ର ଝିଟ୍ଲେ
ଶୋଭୁଥିଲା ତା ଶିର ?

କିଏ ଗଢ଼ି ଥିଲା ଏ ଭୂମେ
ଏତେ କଳାବିଶାଳ ?
କା ଆଜ୍ଞାରେ ନୌକା ଗରଭେ
ଆସିଲା ଏତେ ପଥର ?
କେଉଁ ତୁଙ୍ଗଗିରୁ କାଟି ସେ
ଏତେ ବିଶାଳ ଶିଳା
କେମନେ ବାନ୍ଧିଲେ ଏ ଭୂମେ
ଏ ତ ସୁକତା ମାଳା
ସିନ୍ଧୁ ବାଟେ ରମ୍ୟ କେମନେ
କର୍ମି ଶରଳ ତନ୍ତୁ
ଖେଳ ଯାଉଥିଲା କହ ଗୋ
<u>ଖଣ୍ଡି ସଣଯୁ ମନ୍ତ୍ରୀ</u> ।

—o—

# ତାଜମହଲ

## (ଶ୍ରୀ ନାରାୟଣ ମୋହନ ଦେ)

ଜୀବନର ମଧୁମାସେ ପ୍ରମୋଦ ଭବନେ
ପ୍ରିୟା ସଙ୍ଗେ ମାତି ନାନାରଙ୍ଗେ
ଯାପିଲ ଯାମିନୀ ଯେବେ ଯୌବନସୁଲଭ
ମଧୁମୟ ପ୍ରଣୟ-ପ୍ରସଙ୍ଗେ ।

ସେ କାଳେ ସେ ଅପାର୍ଥିବ ପ୍ରେମର କାହାଣୀ
କେହି କି ନ କଲେ ଲିପିବଦ୍ଧ,
ଭାବି କଲପନା ମୋର ହୁଅଇ ବ୍ୟାକୁଳ
ଯଥା ପକ୍ଷୀ ପିଞ୍ଜରେ ଆବଦ୍ଧ ।

କେମନ୍ତ ସୁଧାମଧୁର ବଚନ ଭାଷିଣି
ସୁଭାଷିଣୀ ତବ ପ୍ରିୟତମା,
ମୋହୁଥିଲେ ମନ ତବ ସେ ବିଶ୍ୱମୋହିନୀ
ନତମ୍ବିନୀ ସୁଗୁରୁମଧ୍ୟମା ।

ବୀଣାକିଣା କଣ୍ଠେ ତୋଳି ସଙ୍ଗୀତ-ମୂର୍ଚ୍ଛନା
ମୋହି ମନ ମୋହନ ଝଙ୍କାରେ
କୁରଙ୍ଗ-ନୟନକୋଣେ ତରଙ୍ଗ ତୃହାଣୀ
ଚାହୁଥିଲେ ଯେବେ ତୁମ୍ଭଠାରେ ।

କେତେ ସୁମଧୁର ସ୍ନେହ ଦରେହି ବଚନ
କେତେ ମିଷ୍ଟ ସେ କଣ୍ଠର ଧ୍ୱନି,
କେହି କି ଶୁଣିଛି ତାହା କେବା ତବ ସମ
ଭାଗ୍ୟବାନ ଭବେ ନୃପମଣି ।

ପ୍ରଭାର ଝଲକେ ଝଳି ନବର ପ୍ରାଙ୍ଗଣ
ସୌନ୍ଦର୍ଯ୍ୟର ତରଙ୍ଗ ଖେଳାଇ
ମନ୍ଥର ଗମନେ ଯାଉଥିଲେ ନିତମ୍ବିନୀ
ଯେବେ କେଳିସଦନେ ଚଳାଇ ।

ଖେଳି ଯାଉଥିଲା ଗୃହୁ ଚପଳା ଚମକ
ଚୀନାଂଶୁକ ଅଞ୍ଚଳ ନର୍ତ୍ତନେ
ଚରଣ ମୂରୁଛି ପଡୁଥିଲା ପୁଷ୍ପଧନୁ
ମଣିମୟ ମଞ୍ଜୀର ନିକ୍ୱଣେ ।

ଛଟକେ ହାଟକଗୋଦୀ ପଶି ସ୍ନାନାଗାରେ,
ବସଙ୍ଗ ଉତ୍ତର ବେଶଭୂଷା
କୁସୁମ-ନିର୍ଯ୍ୟାସେ ସ୍ନାନ କରୁଥିଲେ ଯେବେ
ଅନନ୍ତଯୌବନା ଗୃହୁକୃଶା ।

ସେ ନଗ୍ନ ସୌନ୍ଦର୍ଯ୍ୟଛଟା ପ୍ରତିବିମ୍ବ ତାଳି
ଶତମଣି-ମାଣିକ୍ୟ-ମୁକୁରେ,
ବସାଇ ଚନ୍ଦ୍ରମାହାଟ ଗୃହୁ ଚନ୍ଦ୍ରାନନା
ସ୍ନାନାଗାର ପ୍ଲାବ ପ୍ରଭାପୂରେ ।

ସେ ନଗ୍ନ ଶୋଭା ବଇଭବ ସେ ରୂପଯୌବନ
କେହି କି ଦେଖିଛି ରବିତଳେ ?
ଏମନ୍ତ ସହସ୍ର ପ୍ରଶ୍ନ କଳ୍ପନାସୁନ୍ଦରୀ
ରହି ରହି ପୁଛେ କୌତୂହଳେ ।

ସୌନ୍ଦର୍ଯ୍ୟ ଅଧିଦେବୀଙ୍କି ପାଇ ପ୍ରିୟାରୂପେ
ହେ ସୌନ୍ଦର୍ଯ୍ୟ ପୁରୋଧାପ୍ରବର
କେମନ୍ତେ କି ଉପଚାରେ ପୂଜୁଥିଲ ବାସେ
ଅପରୂପ ରୂପ ମନୋହର ।

କି ମଧୁର ସମ୍ଭାଷଣେ କି ଗୂଢ଼ ବଚନେ
ତୋଷିଣ ସେ ରମାମଣି ମନ
ଲଭିଥିଲ ତାଙ୍କ ପ୍ରେମ, ହେ ରାଜପ୍ରେମିକ
ସୁଦୁର୍ଲଭ ଅମୂଲ୍ୟ ରତନ ।

ସେ ପ୍ରେମର ବିନିମୟେ ସରବସ୍ୱ ତବ
ଦେଇ ତୃଣୟୂର ଉପହାର
ପ୍ରେମର କିଙ୍କର ପ୍ରାୟେ ସେବୁଥିଲ ପଦେ
ସେ ନ୍ୟଗ୍ରୋଧ-ପରିମଣ୍ଡଳାର ।

ଏ ତଥ୍ୟ ଜାଣିବା ପାଇଁ କଳ୍ପନା ମୋହର
ସତତ ଉତ୍ସୁକ ନରସାଇଁ
ଏ ମଧୁର ରହସ୍ୟର ରତନ-ମଞ୍ଜୁଷା
ମୋ ଆଗେ କେ ଦେବ ମୁକୁଳାଇ ;

ସୁଖ ତ କ୍ଷଣିକ ଭବେ କ୍ଷଣପ୍ରଭାସମ
କ୍ଷଣସ୍ଥାୟୀ-ସତ୍ତ୍ୱ ଦରଶାଇ
କ୍ଷଣକେ ହୁଅଇ ଲୀନ ଦୁଃଖଘନକୋଳେ
ଚିଦାକାଶ ତିମିରେ ବୁଡ଼ାଇ ।

ତବ ଏ ପ୍ରେମ ସ୍ୱପନ ତଥା, ନରନାଥ,
ଉଭେଇଣ ଗଲା ଅବିଳମ୍ବେ
ଜୀବନ ଆକାଶ ହୋଇଗଲା ଆଚ୍ଛାଦିତ
ବିଚ୍ଛେଦର ଜୀମୂତକଦମ୍ବେ ।

ତବ ଅଙ୍କ-ପର୍ଯ୍ୟଙ୍କରୁ ନିର୍ମମ ବିଧାତା
କାଢ଼ି ନେଲା ତବ ପ୍ରେୟସୀକି
ମଞ୍ଜୁ ଦନ୍ତାବଳ ଯଥା ପଶି ପଦ୍ମବନେ
ସନାଳ କମଳେ ନିଏ ଟେକି ।

ଭାଙ୍ଗିଗଲା ପ୍ରେମହାଟ ଛୁଟିଲା ସ୍ୱପନ,
ଜୁରି ହେଲା ପ୍ରମୋଦଭବନ
କେମନ୍ତେ ଧଇର୍ଯ୍ୟ ଧରି ରହିଲ ଜୀବନେ
ହରାଇ ସେ ପ୍ରେମିକାରତନ ?

ଦାରୁଣ ବିରହାନଳେ ଜଳି ଦିବାନିଶି
ପ୍ରିୟାସ୍ମୃତି ଗୁଣି ମନେ ମନେ
କେମନ୍ତେ ରାଜେନ୍ଦ୍ର ପୁଣି ବିଦଗ୍ଧ ଚିତ୍ତକୁ
ନିୟୋଜିଲ ସାମ୍ରାଜ୍ୟ ଶାସନେ ।

ପ୍ରିୟାର ଚରଣୁ ସ୍ମୃତି ପରମ ପବିତ୍ର
ଫିଙ୍ଗି ତ ନ ଥିଲ ହୃଦୟରୁ
କେମନ୍ତେ ଉତ୍କର୍ଣ୍ଣ ହେଲ ତୃଷାତୁର କଣ୍ଠେ
ମରୀଚିକାମୟ ଭବମରୁ

ଅବା ସେ ସ୍ମୃତିକି କରି ଚରମ ସମ୍ବଳ
ଜୀବନର ଧ୍ରୁବ-ତାରା ମଣି
ଅନନ୍ତ କାଳ ସାଗରେ ବାହିଲ ତୁମର
ଜରାଜୀର୍ଣ୍ଣ ଜୀବନ-ତରଣୀ ।

ଦୂରେ ଯୋଡ଼ାଶ୍ରୟେ ପରି ପ୍ରିୟତମା ସଙ୍ଗେ
ଭେଟ ହେବ ଭବ-ସିନ୍ଧୁ-ତୀରେ
ଏମନ୍ତ ଭରସା ଚିତ୍ତେ ଅନନ୍ତ ଉଦ୍ଦେଶ୍ୟେ
ବାହିଲ ଜୀବନ-ତରୀ ଧୀରେ ।

ବିରଚିଲ ଯିବା ଆଗୁଁ ରଖିଯିବ କିଛି
ଏ ଅମର ପ୍ରେମର ସନ୍ତକ
କାଳ-ଗର୍ବ ଖର୍ବ କରି ରହିବ ଯା ଚିର
ତବେ ମମ ପ୍ରିୟାର ସ୍ମାରକ ।

ଅଙ୍କିବି ସେ ପ୍ରେମଛବି ଅମର ଅଙ୍ଗନେ
କାଳବକ୍ଷେ ରହିବ ଯା ଚିର
ସତତ ଚଞ୍ଚଳ କାଳସାଗର-ତରଙ୍ଗେ
ବିଚଳିତ ନୋହି ଥିବ ସ୍ଥିର ।

ପ୍ରାଣାଧିକ-ପ୍ରିୟ ତବ ପ୍ରଜାବୃନ୍ଦ ସର୍ବେ
ଜାଣି ତବ ଏହି ମନକଥା
ନିୟୋଜିଲେ ତବ କାର୍ଯ୍ୟେ ସର୍ବସ୍ୱ ତାଙ୍କର
ପିତୃପଦେ ପ୍ରିୟ ପୁତ୍ର ଯଥା ।

ସମର୍ପିଲେ ଧନ ମନ ଉଦ୍ୟମ ଉତ୍ସାହ
ଜ୍ଞାନବୃଦ୍ଧି ପରିଶ୍ରମ ଚେଷ୍ଟା
ସ୍ଥାପତ୍ୟ ରଞ୍ଜନ ବିଦ୍ୟା ସଙ୍ଗେ ନିବେଦିଲେ
ଯିବୁମାର ଦଳା ପରାକାଷ୍ଠା ।

ଅନନ୍ତ ଶାସ୍ତ୍ର ସମୁଦ୍ର ମନ୍ଥି ମହାନନ୍ଦେ
ସର୍ବ ବିଦ୍ୟାସାର-ଚିନ୍ତାମଣି
ଜବିତା ଗାନ୍ଧର୍ବ ବିଦ୍ୟା ସ୍ଥାପତ୍ୟ ରଞ୍ଜନ
ଏକାଧାରେ ଦୃଢ଼ କଲେ ଆଣି ।

ମନପ୍ରାଣ ନିୟୋଜିଣ ରଚିଲ ଯତନେ
ଏ ସୁନ୍ଦର ମନ୍ଦିର-ରତନ
ସେ ଦିନୁଁ ହୋଇଲା ଏହା ପ୍ରେମ-ଦେବଙ୍କର
ସୁମଞ୍ଜୁଳ ନିକୁଞ୍ଜ ସଦନ ।

ଭଙ୍ଗୁର ଭବେ ସକଳ ମୂର୍ତ୍ତିବିଧ୍ୱଂସୀ
ହେଲେହେଁ ଏ ଅମର କୀରତି
ବହୁଭାଗ୍ୟ-ବିପର୍ଯ୍ୟୟେ ହେ ପ୍ରେମିକରାଜ
ଚିରକାଳ ରହିବ କିରତି ।

କରାଳ କାଳ ସଙ୍ଗତେ ଯୁଝି ଘୋର ରଣେ
ପ୍ରେମବୈଜୟନ୍ତୀ ବାନା ଧରି
ଘୋଷିବ 'ପ୍ରେମର ଜୟ ଅମର ସଙ୍ଗୀତେ
ଜୟନାଦେ ଦିଗନ୍ତ ମୁଖରି ।

ଯଦି କେବେ କଦାଚିତେ ଦୂର ଭବିଷ୍ୟତେ
ସେ କାଳ-ସଂଗ୍ରାମେ ଯାଏ ହାରି
—ନ କରନ୍ତୁ ଭୟ—ତାହା କଳ୍ପମାତ୍ର ତହିଁ
ନାହିଁ ଭୟ ଆଉ ଦଣ୍ଡଧାରୀ ।

ତବ ପ୍ରିୟାସୃଷ୍ଟି ଯେଣୁ ହୋଇଛି ଅମର
ନାହିଁ ଆଉ ବିଳୟ ତାହାର,
ଯାବତ ବହିବ ଭବେ ଭବଦୁଃଖହାରୀ
ପ୍ରଣୟର ସୁରଧୂନୀ-ଧାର ।

ତବ ଏ ଅମରପ୍ରେମ କାବ୍ୟର ସୌରଭ
ତାବତ ମୋହିବ ନରଚିତ୍ତ

ନାହିଁ ସେ ନଗରୀ 'ଟ୍ରୟ' ହେଲେନା ସୁନ୍ଦରୀ,
ଅଛି ମାତ୍ର କବୀନ୍ଦ୍ର ସଙ୍ଗୀତ ।

ନାହିଁ ସେ ଜନକଲଙ୍କା ଅଯୋଧ୍ୟାନଗରୀ
କାଳଗର୍ଭେ ହୋଇଲେଣି ବିଲୀନ,
ଅଦ୍ୟାପି କବିଗୁରୁଙ୍କ ପୂତ-ଲେଖନୀରୁ
ହେଉଅଛି ପୀୟୂଷକ୍ଷରଣ ।

ନାହିଁ ସେ 'ମୟ' ନିର୍ମିତ ଗୃହ ଇନ୍ଦ୍ରପ୍ରସ୍ଥ,
ନାହିଁ ଆଜି ଦ୍ୱାରାବତୀ-ପୁରୀ
ମାତ୍ର କାହିଁ ଯିବ, ନୃପ! ଦ୍ୱୈପାୟନଙ୍କର
ସୁଧାମୟୀ ଭାରତୀ ମାଧୁରୀ ।

---

# ଜୀବନ ଚମ୍ପୂ

## (ଶ୍ରୀ ଲାଲମୋହନ ପଟ୍ଟନାୟକ)

## (ଖ)

ରାଗ—କେଦାର । ତାଳ ଆଡ଼ା ।

କ୍ଷମା-ରସ-ସାଗର ହେ
ଶମ୍ଭୁ-କଳିତ-ପତିତ-କୁଳ-ମୁକ୍ତି ସମ୍ଭାର ହେ
ଭକ୍ତ-ହୃଦୟାମ୍ବର ହେ ॥ ପଦ ॥

ଚିତ୍ତ-ଉଦ୍ଧାରଣ ଭବ-ଦୁଃଖ-ସଂହାରକ ହେ
କ୍ଷେମପାଳ ଦୀନ ହୀନ-ଜନ-ସୁପାଳକ ହେ
ଦୁର୍ଗତି-ବିନାଶକ, ଦୁର୍ମତି-ନାଶକ
ଦୁର୍ନୀତି-ଦାହକ, ଦୁର୍ଦଶା-ବାହକ
ସୁଖଶାନ୍ତିଦାୟକ, ସାମ୍ୟପ୍ରୀତିନାୟକ
ସରଣୀପ୍ରସାରକ, ଶୁଭକାରକ ହେ । ୧ ।

ଯୋଉ କେବେଁ ତ ସମ୍ଭାଳି ନ ପାରୁ ଭକ୍ତର ହେ
କ୍ଷଣେ ନିବାରୁଛି ତାର ତାପ ଗୁରୁତର ହେ
ଶାନ୍ତ ନୋହି ନିକର କରୁ ପ୍ରାଣ ମଧୁର
ଅସାରତା ଆବର, କରୁ ଚଢ଼ୁଁ ଅନ୍ତର;
ଅନାୟାସେ ସେ ଜାଣି ପାଉ ପ୍ରୀତି ଅନ୍ତର
ଅନାରତ ତୋର ଜପଇ ମନ୍ତର ହେ । ୨ ।

---

ଭାବ:—ପ୍ରଭୁ ! ତୁମେ ସତ୍ୟ, ଶିବ, ସୁନ୍ଦର, ସଚ୍ଚିଦାନନ୍ଦ, ଗତ-ମୃତ୍ୟୁ, ଶାନ୍ତି-କ୍ଷମା ଓ ଦୟାପ୍ରଦ, ଅକାରଣ ଶରଣ, ପତିତପାବନ, ଜଗତ-ଜ୍ୟୋତି ଓ ପରମ ବ୍ରହ୍ମ ଅଟ । ଆଉ କଣ ବା ପ୍ରାର୍ଥନା କରିବି ! ତୁମର ପବିତ୍ର ଇଚ୍ଛାହିଁ ପୂର୍ଣ୍ଣ ହେଉ ।

କ୍ଷତ ଅନ୍ତରେ ମୁଁ ଅନାଦରେ ଜର ଜର ହେ,
ଛିନ୍ନେ ମୃତ ପ୍ରେମ ଇଚ୍ଛା କର ପୂର୍ଣ୍ଣ ମୋର ହେ
ଜୀବନର ଆଧାର ଜୀବ ଯନ୍ତ୍ର ସୁଧାର
ଜୀବ ଗଣେ ଉଦ୍ଧର, ଜୀବଜ୍ୟୋତି ଚନ୍ଦ୍ରର
ଜୀବଶକ୍ତି-ମନ୍ଦର, ଜୀବ ଭକ୍ତ ବୃନ୍ଦର
ଜୀବନାବ-ବନ୍ଦର, ଜୀବ ସୁନ୍ଦର ହେ । ୩ ।

---

ଟୀକା:—ସମ୍ଭାର=ଧନ । କ୍ଷେତ୍ରପାଳ=ଜଗତପାଳକ । ଦୁରୁଦଶା-ବାହକ=ଯେ ଜୀବନର ଦୁର୍ଦ୍ଦଶା ନେଇଯାଆନ୍ତି । ସରଣୀ-ପ୍ରସାରକ=ପଥ ବିସ୍ତାରକାରୀ । କ୍ଷୋଭ=ଦୁଃଖ । କ୍ଷତ ଅନ୍ତରେ=ଦୁଃଖରେ, କ୍ଷତ ବିକ୍ଷତ ହୋଇଛି ହୃଦୟ ଯାହାର । ଜୀବନାବ-ବନ୍ଦର=ଜୀବରୂପ ନୌକାର ଆଶ୍ରୟସ୍ଥଳ ।

# ଭଞ୍ଜ ସ୍ତବ

(ଗୋଦାବରୀଶ ମହାପାତ୍ର)

( ୧ )

ସେ ଦିନ କି ବନ-ବୀଥିକାପଥରେ    ପଥର ଶିରେ,
ଝୁରୁଥିଲା ମଧୁ ସମୀର ପରଶେ    କୁସୁମ ଧୀରେ ।
ସେ ଦିନ କି ପୁରପ୍ରାନ୍ତର-ଶେଷେ    ଅଭିସାରିକା,
ଘେନି ଫୁଲମାଳା, ଗୁଲଥିଲା ତାର    ଚରଣ ଏକା ।
ସେ ଦିନ କାହାର ମୁକୁଳା କବରୀ—    କୁସୁମ ଅଙ୍ଗେ,
ଅଳି ବୁଲୁଥିଲା, ଢାଳି ଗୁଞ୍ଜନ    ଅଜଣା ଭାଷେ ।
ସିଂହଳ ପଥେ ସାଗର କୂଳରେ    ସେ ଦିନ ବାଳା,
ସତେ ବସିଥିଲା ବାଲୁକା ତଳପେ    ବିରଚି ମାଳା ?
ଭଞ୍ଜ ହେ ! ତବ ବନ୍ଦନା-ଗୀତ    ଏଭଳି ଦିନେ,
ଚପଳ ରଙ୍ଗେ ଶୁଣାଇ ଥିଲ କି    ଶିଖିଲ ଜନେ ?

ନବ ନୀଳଘନ ଚପଳା ସମାନ
ହସିଲ ତରୁଣ ରାଜାଲ କବି,
ନବ ତା ଧରା, ନବୀନ ଭାଷ
ପଥରେ ଦିଶିଲା ତୁମର ଛବି ।

( ୨ )

ସେ ଦିନ ଭଞ୍ଜ ! ଭାସି ବା ଉଠିଲା    ସାଗର-ତୀରେ,
ତୁମର ଅଧମ ସଙ୍ଗୀତ ଶୁଣି,    ପୁଲକ ନୀରେ ।
ପୁର ବରଙ୍ଗଣୀ ପୁଷ୍ପିତ ତାର    କାମନା ଧରି,
ସେ ଦିନ ଭଞ୍ଜ ! ତବ ଗଉରବ—    ସପନ ଭରି ।

କଲ୍ଲ ମୁଖରିତ, ପୁରଜନ ଚିତ— ମରମ ତଳ
ଉଚ୍ଛଳ ଉଠିଲା ସ୍ୱର୍ଣ୍ଣଳ ବରଣ ଛଳକା ଜଳ ।
ଉଠିଲ୍ଲ ଉଚ୍ଛଳି ସେକାଳେ ଉଷ୍ଣ ! ଦାସର ପଥେ,
କେତେ ଅଭିମାନ ଅଶ୍ରୁ ମନ୍ଥର ହୃଦ ଜଗତେ ।
କୁଞ୍ଜେ ଆସିଲ୍ଲ କୁଙ୍କୁରଗନ୍ଧ ଖେଳାଇ ବାଳୀ,
ପଛେ ଫୁଟିଥିଲ୍ଲ ଖୋପା ଭୂଷଣର କୁସୁମକଳି ।
ଝୁଣୁ ଝୁଣୁ ଝୁଣୁ ଚରଣ ନୂପୁର
ଡାକିଲ୍ଲ ବଜାନେ, ଗାଇଲ କବି,
କୋଟି ଅନ୍ତରେ ଘେନ ଜୟ-ଟୀକା
ତରୁଣ-ପରାଣ କଣ୍ଠରବି ।

( ୩ )

ଲଭିଲ କି କାର ତରୁଣ ଅରୁଣ ଅଧର ସୁଧା,
ଚୁମ୍ବନ ତଳେ ରହିଲ ରମଣୀ ପ୍ରଣୟାତୁରା ।
ଅବଗୁଣ୍ଠନ ଫେଇଲ କାହାର ସରସୀ-ତଟେ,
କୁଣ୍ଠିତା ବଧୂ କଣ୍ଠେ ଜଡ଼ାଇ କୁସୁମ ପଥେ ।
କାଢ଼ିଲ କାହାର ଶିଥିଳ ବସନ, ପୂଜିଲ ପଦ,
ମଧୁ ବିହ୍ୱଳା ମନ୍ଦରେ ବରି ପ୍ରଣୟ-ମଦ ।
ଦୂର ଦେବାଳୟ ଆଲତି ବେଳରେ ମାଳତୀମାଳା
ତବ ଗଳେ ଦେଇ ବଅଁ କି ପୂଜିଲ୍ଲ କିଏ ସେ ବାଳା !
ଶୁଭ ଶେଯେ ଫୁଲରେଣୁ-ରଞ୍ଜିତ କାହା ନେ ଧନ୍ୟ
ତବ ବୁକୁ ପରେ ମୁଦିଲ୍ଲ ତାହାର ନୟନ କେବେ !
ତତ ବରଷଣୀ ଅନୁରାଗିଣୀର
ରଟିଣୀ ମାଜଣା ଗୁଲଛି କବି,
ଝୁଣୁ ଝୁଣୁ ଝୁଣୁ ଚରଣ ନୂପୁର
ତରୁଣ ବୁକୁରେ ଆସନ ଲଭି ।

( ୪ )

ଆଜି ନବ ନବ ଗୀତି ଉତ୍ସବ— ପ୍ରବାହ ଧାରେ,
ଫଗୁଣ ଆମ୍ର ମୁକୁଳ ଗନ୍ଧଲେ ଏ ଧରଣୀରେ ।
କଳ କଲ୍ଲୋଳେ ଗାଏ ଏତେ କାହିଁକି ଏ ଦୀନ କବି,
ଚରଣ ତାହାର ପରଶେ ତଟିନୀ, ଉପରେ ରବି ।
ଉପରେ ଚନ୍ଦ୍ର, ଉପରେ ତାରକା, କୁସୁମ ବନେ,
ନବୀନ ଦେଶର କଳିକା ଚମ୍ପୁନେ ଜାଗୁଛି ମନେ ।
ଦେଖି ବନମାଳା ଗଳାରେ ଚଢ଼ାଇ ଚଞ୍ଚଳ ଛନ୍ଦେ,
ଲଘୁ ଛନ୍ଦ ତବ ଚହଲାଇଥିବ ଏ ବନ ପଥେ ।
ଏ ଶିଳା ଉପଳ ଶୀତଳ ତରଳ ଲହରୀ ମେଳେ,
ଆଜି ଚିରନ୍ତର ସପନ ସଙ୍କେତ ଦେଖିଚ ଖେଳେ ।

ତବ ପଦରେଣୁ ସଙ୍ଗୀତମୟ
ଏ ବାଲୁକାମୟ ହୋଇଛି କବି,
ରୁଣୁଝୁଣୁ ପ୍ରିୟା ଚରଣ ନୂପୁର
ଜଗାଏ ପରାଣେ ପ୍ରୀତି ପୂରବୀ ।

( ୫ )

କେତେ ଯୁଗ ପରେ ଆଜି ବଂଶପୁରେ ହେ କବିବର,
ତବ ପରିମଳ ମଙ୍ଗଳ ଦେବୀ, ତରୁଣ ଦଳ ।
ଚୂତବନ ତଳ ନବୀନ ବଉଳ ପରାଗେ ପୂଜି,
ଉତ୍କଳେ ଯିବେ ଶତେକ ଭକ୍ତ ଆବର ସୃଜି ।
ତରୁଣ ଜୀବନେ ଆବର ଜାଗିବ ଏ ବନତଳେ,
ଶତ କୃପାତୁର କାମନାକୋମଳ ପ୍ରଣୟ-ସ୍ୱରେ ।
ଆବର ଜାଗିବ, ଏ ବନେ ଲାଗିବ ବାଣୀବରଣ,
ନବ ବିଧାତାର ଶୁଭ-ବୀଣାତାରେ ମାଧବ ମନ୍ତ୍ର

ଅଗଣନ ବନ ବିହଗ କୂଜନେ ତଟିନୀ ତଟେ,
ଜନ୍ମ ଉତ୍ସବ ଉଠିବ ନିଖିଳ ମାନସପଟେ।

ତୁମର ବେଦୀର ଦୀପ ଉଜ୍ଜ୍ୱଳ
ଜାଗିବ ଏ ବନ ଭୂମିର ତଳେ,
ଫୁଟିବ ସରସ ଶୁଭ୍ର ସରସିଜ
ଭେଦି ଭବମୟ ମାନସ ବଳେ।



# ଧାମରା

(ଶ୍ରୀ ଚନ୍ଦ୍ରମଣି ଦାସ)

ଉତ୍କଳର କଳଙ୍କ— ବଣିକ-ମଣ୍ଡଳୀ
କହ ତୁ, ଧାମରା ! ଥିଲେ କେଉଁ ଭଳି ?
ବଂଶୀରବ ନିଃସ୍ୱନ, ନର୍ତ୍ତକୀ-ନର୍ତ୍ତନ
ଚିତ୍ତ ତାଙ୍କ କରୁ ନ ଥିଲା ରଞ୍ଜନ ।

ଶ୍ରୁତିଦ୍ୱାରେ ଥିଲା ସିନ୍ଧୁ-ଗରଜନ,
ନେତ୍ରଦ୍ୱାରେ ଥିଲା ତରଙ୍ଗ ନର୍ତ୍ତନ ।
ବିଶାଳ ସିନ୍ଧୁର ପୂର୍ଣ୍ଣ ବିଶାଳତା
ଦେଖି ଶିଖିଥିଲେ ବିଶ୍ୱ-ପ୍ରେମିକତା ।

ଜାଣି ତ ନ ଥିଲା କୁଟିଳତା ଚିତ୍ତ
'ସାଧୁ' ନାମେ ତେଣୁ ଥିଲେ ଅଭିହିତ ।
ନ ଥିଲା ତାଙ୍କର କୂପମଣ୍ଡୂକତା,
ଥିଲା ନାନା ଦେଶ— ଭାଷା-ଅଭିଜ୍ଞତା ।

କରୁଥିଲେ କେତେ ସୁବିପୁଳ ଦାନ,
ଲଭୁଥିଲେ ନୃପ— ସମାଜେ ସମ୍ମାନ ।
ଖୋଳି ପୁଷ୍କରିଣୀ, ଦେଉଳ ନିର୍ମାଣି
ବଢ଼ାଇ ଥିଲେ ତ ସ୍ୱଦେଶର ଆଣି ।

ପରହିତ ପାଇଁ ଦେଉଥିଲେ ଧନ
ଯାପୁଥିଲେ ନିଜେ ସରଳ ଜୀବନ ।
ଜାଣି ନ ଥିଲେ ତ ଦାମ୍ଭିକାର୍ତ୍ତନ,
ଦାନ-ଧର୍ମ ପାଇଁ ଅର୍ଜୁଥିଲେ ଧନ ।

ହୀରା, ନୀଳା, ମଣି  ମୁକ୍ତାଦିର ଗୁଣ—
ନିରୂପଣେ ଥିଲେ  ଅତି ସୁନିପୁଣ ।
କି ମଣି ଧାରଣେ  ହୁଏ କେଉଁ ଫଳ,
କି ମୁକୁତା ମନ୍ଦ,  କାଏ ପୁଣି ଭଲ ।

ଗଜ, ସର୍ପ, ଭେକ  ମତ୍ସ୍ୟ ଶୁକ୍ତି-ଜାତ—
ମୁକ୍ତା-ଗୁମ୍ଫା ତାଙ୍କୁ  ନ ଥିଲା ଅଜ୍ଞାତ ।
ଜଣାଥିଲା ତାଙ୍କୁ  ହୁଅଇ କେମନ୍ତ,
ସୁକୋମଳ କମ—  ନୀୟ ଗଜଦନ୍ତ ।

ଯାଉଥିଲେ ଯେଉଁ  ବାଣିଜ୍ୟ ଉଦ୍ଦେଶ୍ୟେ,
ଏ ଦେଶବଣିକେ  ବହୁ ଦୂର ଦେଶେ ।
ଜଣାଥିଲା ତାଙ୍କୁ  ଦେଶ ବିଦେଶର
ପରମ୍ପରାଗତ ~  ଘଟଣା-ସକଳ ।

ମିଶି ଅନ୍ୟ ଦେଶ  ବଣିକଙ୍କ ସଙ୍ଗେ,
ଜାଣୁଥିଲେ ପ୍ରୀତି— ସମ୍ଭାଷ-ପ୍ରସଙ୍ଗେ ।
କେତେ ମଣି ମୁକ୍ତା  ଥିଲା ମିଶରରେ,
ଥିଲା ପୁଣି କେତେ  ରୋମ ନଗରରେ ।

ଶୁଣୁଥିଲେ ଯାହା  ଅତୀତ ଘଟଣା,
କରୁଥିଲେ ତାର  ସ୍ୱଦେଶେ ବର୍ଣ୍ଣନା ।



# ମୂକ ଭଗବାନ

(ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ)

ଜୀବନର ପଙ୍କେ ଯହିଁ ହୀନ ଅକିଞ୍ଚନ,
ଲଭନ୍ତ ଆଦୃତ, ତହିଁ ପାଉଛ ଆସନ,

ହେ ଦରିଦ୍ରସଖା ; ନିଖିଳର ରାଜେଶ୍ୱର,
କରିବାକୁ ଏ ଜୀବନ ସୁନ୍ଦର ଅମର ।

ବରି ନେଇଅଛ ଆପେ ଦୈନ୍ୟ ନିର୍ଯାତନ,
ସହସ୍ର ଲାଞ୍ଛନା ଭୋଗ, କ୍ଷୁଧା ଅନଶନ ।

କରିଅଛ ଶୁଭ୍ର ଦେହ ଶୋଣିତ-ଆପ୍ଲୁତ,
ମାନବ ଗରଳ ବାଣୀ କରୁଛ ଅମୃତ ।

ଅଶ୍ରୁ ଅନ୍ତରାଳୁଁ ତହିଁ ଫୁଟାଉଛ ହାସ,
ନିରାଶ ଆଗାରୁ ତବ ଆଲୋକ ପ୍ରକାଶ ।

ପ୍ରଭଞ୍ଜନ ଝଞ୍ଜା ମେଲେ ହସ ତୁମେ ଶାନ୍ତ
ମୃତ ଜୀବନର ଉତ୍ସ ଅରବିନ୍ଦ-କାନ୍ତ ।

ନିଖିଳ ବିଶ୍ୱର ପାପଭାରେ ନିଷ୍ପେଷିତ,
ମନ୍ଦହାସେ ଗାଉଅଛ ଅମର ସଙ୍ଗୀତ ।

ଗାଉଛ ଦରିଦ୍ରସୁରେ ନିଖିଳର ବ୍ୟଥା,
ଭ୍ରାନ୍ତ ଏ ମାନବ ଲାଗି ଏତେ ହିଁ ମମତା ।

ନୂତନ ଯୁଗକୁଁ ବହିଯାଏ ବାରିଧାରା,
ଦିନୁଁ ଦିନ ବଢେ ଯେତେ ଜୀବନର ଭାର ।

ସଭ୍ୟତାର କାଳ-ସର୍ପ ବକ୍ଷେ ହୋଇ ଘାର,
ପଡେ ନାହିଁ ତୁମ ବ୍ୟଥା ଶ୍ରବଣେ କାହାର ।

ତୁମ ଅଶ୍ରୁ ଯୋଗେ ହୃଏ କୃଳଣ ତରଳ,
ମୂକ ପରବତୁଁ ଫାଟି ପଡ଼େ ଅଶ୍ରୁଜଳ ।

ହେ ମୂକ ପାଷାଣ ପ୍ରଭୁ ! ଚିର ଅବିଚଳ,
ହେ ଲାଞ୍ଛିତ, ନିର୍ଯ୍ୟାତିତ, ହେ ଶିବ ମଙ୍ଗଳ ।

ତୁମର ଶୋଣିତ-ଅଶ୍ରୁ ସ୍ନାନ କବିପ୍ରାଣ,
ପରଶିଛୁ, କି ଆଦେଶ ଗାଇବାକୁ ଗାନ ?

ନତଶିରେ ଶ୍ରୀପଦ୍ମରେ ମାଗେଁ ଆଜି ଭିକ୍ଷା,
"ଦିଅ ସ୍ୱାନବେଶେ ମୋତେ ଦରଦର ଦୀକ୍ଷା ।"

---

# ଶୃଙ୍ଖଳରେ ଯୁଗର ଯାତ୍ରୀ

(ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର)

ବନ୍ଦେ ଶୃଙ୍ଖଳ ରେ ଯୁଗର ଯାତ୍ରୀ, ଜୀବନ-ଯାତ୍ରା-ପଥେ
ଉଚ୍ଛୃଙ୍ଖଳ ତୋର କର୍ମ-ନିଷ୍ଠା ଦୁର୍ବାର ମନୋରଥେ;
ସ୍ୱାର୍ଥ ତେଜିକ ରେ ବିଶ୍ୱ ପାଇଁ ତୁ ବାହାର ଅଣ୍ଟା ଭିଡ଼ି,
ଅନ୍ତରୁ ତୋର ଆସୁ ଗରବ ଗଳି ପଡ଼ୁ ତଳେ ଛିଡ଼ି;
ଲକ୍ଷ୍ୟହୀନ ତୋ ଯାତ୍ରା କି ? ସେ ଯେ ସୃଷ୍ଟିର ସାର ଜାତି,
ଲକ୍ଷ ପଥିକ ସଙ୍ଗେ ତୁ ଗାଅ ଉଚ୍ଛଳେ ମଧୁଗୀତ;
କର୍ମପଥରେ ଚିନ୍ତିତ ହେବୁ ?- ଦଣ୍ଡେ ବେଳ ବା କାହିଁ
ଦୀପ୍ତ ଆଶାର ଉଜ୍ଜ୍ୱଳତାରେ ଅନ୍ଧାର ଲାଗେ ନାହିଁ;
କିମ୍ପା ମନରେ ଧକା ?
ନସ୍ତ ହୋଇ କି ଘୂର୍ଣ୍ଣିକୁ ଦେଖି ଉଠେ ଚକାଇ ତକା ?

× × × ×

ଅଗ୍ନିମନ୍ତ୍ର ଏ ତପ୍ତ ମରୁରେ ଯାତ୍ରା ନାହିଁ ରେ ସର;
ତୃଷ୍ଣା ପିଶାଚୀ ଆକ୍ରମେ ପଥେ, ଲକ୍ଷିବ ବଳେ ଧର
ଉତ୍କଟେ ହସେ ସଙ୍କଟେ ତୋର, ଦୁର୍ବଳ କି ରେ ମନ ?
ଧୈର୍ଯ୍ୟ ତୋର ଯେ ଅସ୍ତ୍ର ଅଜୟ, ଶୌର୍ଯ୍ୟ ତୋ ଅକଳନ;
ଦୂରର କେତେ ଦୁଃଖ-ଶିଖର ଅଗ୍ରେ ତୋର ଉଭା,
ଚଣ୍ଡ ଅନଳ ଉନ୍ମୁଖେ ଜଳେ, ଦୁର୍ଦ୍ଧର ଚିରଯୁବା
ନସ୍ତ ତୁ କି ରେ ଯୁଗର ଯାତ୍ରୀ ? ଆଗେ ଆସ ରେ ଧାଇଁ,
ଦୁଆରେ ତୋର କଣ୍ଟା କୋଟିଏ ମୁଣ୍ଡ ଟେକିବ ନାହିଁ,
କିମ୍ପା ଜୀବନେ ଧକା ?
ବିଶ୍ୱର ହିତେ ସନ୍ତାପଭାଗୀ, ଅଗ୍ନିପଥ ତୋ ସଖା ।

× × × ×

ବଜ୍ର ବରଷା ଗର୍ଜଇ ପଥେ ଛଡ଼ି ଚମକ ଉଠେ,
ଉଚ୍ଛୁଳ ନଈ ଝଞ୍ଜା ସରିଜ ଘୂର୍ଣ୍ଣୀର ବେଗେ ଛୁଟେ,
ସଂହାର ସାରେ ସଂସାର ସାର ସର୍ଜଇ ମହାରଣ,
ମୃତ୍ୟୁଦେବର ତାଣ୍ଡବ ନାଚେ ଦୁନ୍ଦୁଭି ବାଜେ ଘନ
ଲକ୍ଷ ବିପଦ ଦଳବଳ ସାଜି ବିଶ୍ୱେ ତରସି ଆସେ,
ଅନ୍ଧାର ଘୋଟେ ଅନ୍ତରେ ବଳେ ! ତୀବ୍ର ବିକଟ ହାସେ,
ଜନ୍ମଭୂଇଁ ଯୁଗ ଯାତ୍ରୀ କି ଉଦ୍ୟାନେ ଉଡ଼େ ଠେଲି ?
ଦୁର୍ଜୟ ତେଜେ ଦମ୍ଭୋଳି ଶତ ଦମ୍ଭେ ଦଅ ରେ ଦଳି;

କମ୍ପ ଏଡ଼େ ତୋ ଦକା ?

ଅଗ୍ରସର ରେ ଉଜ୍ଜ୍ୱଳ ପଥେ ଯାତ୍ରା ଯେ ମଧୁସଖା ।

× × × ×

ଶୋଷଇ ମାଂସ ମଜ୍ଜା ରକତ ଲକ୍ଷ ମାଛର ଜାଡ଼,
ପିଣ୍ଡ ଧଡ଼କେ ଚଣ୍ଡ ଚମକେ, ଛିଣ୍ଡି ପଡ଼ଇ ହାଡ଼ ।
ନିଦ୍ରେଜ ଧର ନାଃଶେଷ ହୋଇ ଦାଣ୍ଡକେ ପଡ଼େ ଠେଲି,
ଲାଲୁବା-ଧାର ନିଷ୍ଫଳ ହୁଏ, ଭୁଜଙ୍ଗ ଯାଏ ଚରି,
ସଂସାର ସାର ଶୂନ୍ୟ ଜୀବନ, ସ୍ପନ୍ଦନହୀନ ଛାତି,
ତଥାପି ମୂଳ ରେ ବିଶ୍ୱାସ ପୋଡ଼ି ଈଶ୍ୱର ତୋର ସାଥୀ;
ଦବ ଯିବୁ କି ରେ ଯାତ୍ରୀ ଡରେ ତୁ ? ଯାତ୍ରା ଯେ ସରି ନାହିଁ,
ଭୁଜଙ୍ଗ ମାତ- ଜାଡ଼୍ୟପଦରେ କିଂକର ହେବୁ ଯାଇ ?

କମ୍ପ ଜନ୍ମ ତୋ ଦକା ?

ମିଥ-ଡଙ୍କା ଯେ ବିଶ୍ୱେ ଦେଖଇ, ଶତ କେ ଦେବ ଧକା ?

× × × ×

ସଂହାର ଶେଷେ ଏ କି ରେ ମୂର୍ତ୍ତି ? ଶୁଭ୍ର ଭୂଷଣ ବେଶେ
ନାଃସର ଆସେ ନିର୍ମଳ ରସେ ଅମୃତ ମର ଦେଶେ,

ମନ୍ଦ-ମଳୟ   ମର୍ମର ଗାଏ,   ମର୍ମେ ଜାଗି ରେ ଧରା,
ପଲ୍ଲବ ଉଠେ   ନନ୍ଦନ ମଦେ;   ଶାନ୍ତସଲିଳଭରା
ବକ୍ଷେ ଭସାଇ   ନିଃସ୍ୱେ ରସାଇ   ସ୍ୱର୍ଣ୍ଣଦୀ ଗରେ ଛୁଟେ
ନିର୍ଜ୍ଜୀବ ଜଡ଼   ସୁପ୍ତ-ଶରୀର   ସାହାସ୍ୟ ଧହର ଉଠେ
କୁଞ୍ଜନିଳୟେ   ମଞ୍ଜୁଳ ତାନେ   ଗୁଞ୍ଜର ଗାଏ ଅଳି,
ପଞ୍ଚମେ ପିକ   ଗାଏ ରେ ଯାତ୍ରୀ,   ତୋତେହିଁ ଲକ୍ଷ୍ୟ କରି,

ସମ୍ଭବେ କାହୁଁ ଦଳା ?

ସ୍ୱର୍ଗ-ସରଣୀ   ଯାତ୍ରୀ ରେ ତୋର,   ସୁଖ ଅମିୟ ଚଖା !

× × × ×

ଅନ୍ତରର ତୁ   ଅନ୍ତର ନିଜେ,   ମୈତ୍ରୀ ତୋ କରବାଲେ
ସନ୍ତତ ଭରେ   ସର୍ବଗ୍ରାସୀ   କାଳ, ପଡ଼ିଯିବ କାଳେ,
ହିଂସା-ବହ୍ନିର   ବାନ୍ଧନା ଚଳାଇ   ଯାତ୍ରୀ, ଆସ ରେ ଧାଇଁ,
ପୁଣ୍ୟ ତୋର   କର୍ମ-ଜାତକେ   କଣ୍ଠା ଲେଖିଛି କାହିଁ ?
ଅଗ୍ରଣୀ ତୁ ରେ   ଜାଗ୍ରତ ଚିର,   ବୀର ନାୟକବର,
କଙ୍କାଳ ତନୁ   ଶଙ୍କା ତେଜି ତୋ   ଇଙ୍ଗିତେ ଖରତର,
ମୁକ୍ତି ଦେବୀ ତ   ଅନୁସରେ ତୋରେ,   ଶାନ୍ତି ପ୍ରଗତି ଆସେ,
ଯୁକ୍ତିର ବୀର   ଯାତ୍ରୀ ହେବୁ କି ?   କର୍ମ ହିଁ ତାପ ନାଶେ;

କାମ୍ୟ ହେବ ରେ ଦଳା ?

ଭ୍ରାନ୍ତ ଏ ଭବେ   ଇନ୍ଦ୍ରଜାଲେ ତୋ   ସୁନ୍ଦର କରି ପଳା ।

× × × ×

ଦିନ ପରେ ରାତି,   ମାସ ପରେ ମାସ,   ଋତୁ ପରେ ଋତୁ ଆସେ,
ଯୁଗ ପରେ ଯୁଗ   ବହି ଯାଏ, ହସେ   ନିୟତି ଅଟ୍ଟହାସେ,
କଳୁ ତୋତେ ଏ   ସଂସାର ହାଟେ   ଭେଳକି ନ ପାରେ ଭଳି
ସ୍ୱର୍ଣ୍ଣିତ ପଥ   ସୌରଭମୟ,   ଅମୃତ ପନ୍ଥେ ଗଳି,

କର୍ମ-ଜୀବନ- ସଙ୍ଗୀତ ଗାଇ ଯାତ୍ରୀ ଚାଲ ରେ ଧାଇଁ,
ବଜ୍ର କୋଟି ଯେ ସମ୍ମୁଖେ ଉଠେ, ଚମ୍କିତ ନହ କାହିଁ ?
ସନ୍ତାପ ଶୋକ ଅନ୍ତରେ ଦହ, ଦୃଷ୍ଟି କୋଣ ଟେକା ନାହି
ସୁନ୍ଦର ଯୁଗ ସନ୍ଧାନି ନେଉ, ବାଟର ସଖ୍ୟ ପ୍ରୀତି,
କିମ୍ପା ଦେଉଛୁ ଦେଖା ?
ଚାଲ ରେ ଯୁଗର ଯାତ୍ରୀ, ବଜାଇ ବିଶ୍ୱବିଜୟୀ ଡଙ୍କା ।

# ତୋହର ସାଥୀ

(ଶ୍ରୀ ଅନନ୍ତ ପଟ୍ଟନାୟକ)

## ଗୋପବନ୍ଧୁ ଦାଶ

କିଏ ସେ ନହେ ଦେବତା ସେହି
 ଦେବତା ସେ ତ ନୁହେ ରେ ନୁହେ
ଖେଳନ୍ତି ଖେଳ ହସିଛି ହସ
 ମଣିଷ ପାଇଁ ମଣିଷ କହେ ।

ସକଳ ଗାଳି ନିନ୍ଦା ସହି
ବରଷା ଖରା ହରଷେ ଦାହି ।

ନର୍ଦ୍ଦଳ ଶିଶୁ ମୁଖରେ ଆଜି
 ସେହି ଯେ ନୂଆ କାହାଣୀ ଲୁହେ
କାହାରି ପାଶେ ଅଜଣା ସେହୁ
 ପରାଣ କୋଟେ ସବୁର ଲୁହେ । ୧ ।

ଧୂଳିର ଫୁଲ ମହକ ସେ ତ
 କାହିଁରେ ଅଛି ଯାଏ ରେ କହି
ସ୍ନିଗ୍ଧ ହାସେ ଆତୁର ହିଆ
 ଥରଇ ବ୍ୟଥା ପରଶ ପାଇ ।

! ବଜାଇ ଭଜ ଜନ୍ମର ତାଳ
ନୀଳର ପୂଜା ପ୍ରଦୀପ ଜାଳି

ପତୁଆରେ ସେ ଆଟୋପେ କେବେ
 ଆପଣା ମହା ଗରବେ ଧାଇଁ
ଖିଲି ସେ ଯେ ଉହାଡ଼େ ବସି
 କହୁଥିଲେ ଗୀତ ଗଢ଼ଇ ଥାଇ । ୨ ।

ଲହରେ ଲହର ମିଶାଇ ନେଇ
ପ୍ରଳୟ ଗୀତ ଗାଉଛି ଆଉ
ଶିଳାରେ ଶିଳା ବଜାଇ ସିନା
ଜଳଇ କିଏ ମଶାଣି ହାଉ ।

କିଏ ସେ କହ ତାହାର ସମ
ସେନେଇ ଘରେ କରୁଛି ରଣ

ମରମ ବୀଣା ନରମ ସୁରେ
ମୋହି ଶତ ଦୁଃଖ ଦାଉ
ତାହାର ଲହର ତାହାର ହସେ
ଖଞ୍ଜନା କରେ । ଖାସନା ଯାଉ ।୩।

ଏ ଭାଙ୍ଗ ବାଡ଼ଦେଉଳ ସେ ଯେ
ବସୁଧର ବାଲୁକା ତଳୁ
ଦୁନିଆ ଦ୍ୱାରେ ଆଣିଛି ନାଚ
ମଣିଷ ସେବା ଅଶ୍ରୁ ଚକ୍ଷୁ ।

ଏ ଜାଣି ଗାଲମାଧବ ସେ କି !
ଯାଇନି ନିଜ ଜୀବନ ଲେଖି ।

କେତେ ଏ ଜାଣି ବୋଇତ ଲାଗି
ମହାଦ୍ୱୀପ ସେ ଅନାଇ ଜାଉ
ଆଜି ଏ ତାର ପରାଣ ତାପେ
ନିଅଣ ଯେତେ ଦୁଃଖୀ ମନୁ ।୪।

---

# ମା ! କରୁଣା ନାହିଁ କି ?

(ଶ୍ରୀ ସ୍ୱଚ୍ଛନ୍ଦ ଚରଣ ପଟ୍ଟନାୟକ)

(୰ଗୋପାଳ କୃଷ୍ଣଙ୍କ "ସଖି ! ଅକ୍ଷିଲି ନାହିଁକି"—ବୃତ୍ତରେ)

ମା ! କରୁଣା ନାହିଁ କି ?
ତବ ପୂଜନ—ମୂଢ଼ ଭୁଲିକି ? । ଘୋଷା ।

ଜବା-କନ୍ଦବନ ଭଞ୍ଜ-ଦେଶରେ ମା
ମୂକ କାହିଁକି ବଙ୍ଗଳୀ ?
କୃପା ସୁଧା ଝରି ଢାଳ ଯୁଗେ ଯୁଗେ
ଚିହ୍ନା ସତେ ପାଇଲ କି ?

ଭଜନ-ଗୀରଣ— ସୁମନ-ଦାମ
ଗଳା-ଭୂଷଣ ପାଇଁକି
ଜଗ-ମାଳକାର ଦେଲେ ଯା ଏ ଦେଶେ
କାସ ସମାନ ଢାଳିକି ?

ଶଙ୍ଖେ ଉଠେ ରବ ଓଡ଼ିଆ ବଇବ—
ହୀନ; କେ ଧାରିବ ସେ କି ?
ପର ରସନାରେ; ନା ଉଠିଲେ ଦେଖେ
ଜନନ ତାର ଫୁଲିକି ।

ବଙ୍ଗ-କୁମ୍ଭ-କନ୍ଥା— ନବୀନ ସଙ୍ଗୀତ
ଗାଉନ ମା ! ଓଡ଼ିଶା ଭେକି
ନିଜ ମୂକ-ଜିହ୍ବା— ଆଉ ମେ ତା କରେ
ନ ଦେଲ ମଞ୍ଜୁଳ ସ୍ପର୍ଶୀ ।

ଛନ୍ଦ-ରସ-ପ୍ରାଜ୍ୟ    ଲୁଟିଛୁ ଅତୀତେ
ରଖି ନାହିଁ କିଛୁ ବାକୀ
ନବ ଯୁଗ ସ୍ରଷ୍ଟ୍ର—    ମନ୍ଥନ ଅମୃତ—
ଲାଳସୀ; ନାହିଁ ତା ତୃପ୍ତି ।

ବନ୍ଧନ-ଭିତ୍ତିତ    ଭକ୍ତ ଗରବତ—
ଦେଶ-ଅତୀତ-ଗାଥିକା
ରଖିବ କି ଅବା    କାଳର ମନ୍ଥନେ
ନିସ୍ପୃହ ତାଲି ପାଶିକା ?

---

# ପଶ୍ଚିମ-ପବନ ପ୍ରତି

(ଶ୍ରୀ ଚନ୍ଦ୍ରଶେଖର ମିଶ୍ର)

( ରାଗ—ଶୈଳୀ )

[ ୧ ]

ନବେ ପଶ୍ଚିମ-ଉଚ୍ଛ୍ୱାସ ! ଶରତ-ଘନ-ନିଶ୍ୱାସ
ଅଜଣା ଚରଣେ ସିନା ଦୃପ୍ତ ! ତୁମ୍ଭର,
ଗୁଣୀ ମୁଖେ ପ୍ରେତକୁଳ ହୋଇଲୁ ପର ଆକୁଳ
ପାଟଳ-ଶୁଷ୍କିଲ-କଳା ରକ୍ତ-ପତର
ଯେତେକ ଯେତେକ ଆବରେ ମଣ୍ଡି,
ତୁମର ପ୍ରଳୟ-ସ୍ରୋତେ ପଳାଏ ବାନ୍ଧ ।

[ ୨ ]

ତୁମର ପ୍ରବାହ-ରଥେ ଶୀତ-ନିମ୍ନ-ଭୂମି-ପଥେ
ବହୁ ନିଅ ବୀଜ କୋଷ, ଶୁଅନ୍ତି ଯହିଁ
ନିଦାଘ-ହିମ ଶୟନେ କବରେ ଶବ ଯେସନେ,
ତୁମ ଶ୍ୟାମ-ସଖା ବର୍ଷା ବାଜିଲେ ଏଥି
ସ୍ୱପ୍ନ ହେଳ ଧରଣୀ-ଜାନେ
ମନ୍ଦ୍ର ତୂରୀ-ଭେରୀ-ଶିଙ୍ଗା ନଭ-ବିତାନେ ।

[ ୩ ]

ପୂରିଯାଏ ବନ ଗିରି— କେଦାରେ ସଜୀବ ଶିରୀ
ବିବିଧ ସୁବାସ ରଙ୍ଗେ, ଫୁଟେ କୋରକ,
ଦୁର୍ଜ୍ଜୟ-ଶକ୍ତିମାନ ! ଦୂରି ବୁଲ ସର୍ବସ୍ଥାନ
ତୁମେ ଦେଇ ଜୀବନ-ଦାନ ମଦକ,
ଦୋହଲାଇ ପାଦପ-ତୃଣ,
ବିନାଶକ, ସମ୍ପାଦକ ! ଶୁଣ ହେ, ଶୁଣ !

[ ୪ ]

ଧଗ୍‌-ଉରସେ ଯେସନ ଶୁଖିଲ୍ଲ ପତର ଗଣ
ଝଡ଼ ପଡ଼େ ତୁମ ପ୍ରଚଣ୍ଡତା ପରଶି,
ଉଦାମ-ସ୍ରୋତେ ତୁମର ତୁଙ୍ଗନଭ-ଭାଲେ ଥର
ମୁକୁଳିତ-ମେଘମାଳ ପଡ଼ଇ ଖସି,
କମ୍ପି ଯାଏ ଜଳଦ-କାୟା,
ବରଷଇ ନୀର, ତେଜେ ବିଜୁଳୀ-ଜାୟା ।

[ ୫ ]

ଫିଟିଲ୍ଲ ପରି ଉଜ୍ଜ୍ୱଳ ଘୋର-ପିଶାଚୀ-କୁନ୍ତଳ
ତୁମ ଶିରେ ମେଘ-କେଶ ପଡ଼େ ମୁକୁଳି,
ଦିଗବାଳସ୍ତରୁ ଧରି ଊର୍ଦ୍ଧ୍ୱେ ମହାଶୂନ୍ୟ ଭରି
ଘୋର କମ୍ପେ ଥରି ଥରି ପଡ଼ଇ ଲୁଳି
ବିଶ୍ୱଗ୍ରାସୀ ଝଡ଼ ସହସା,
ଆତଙ୍କେ ନୟନ ମୁଦେ ମନୁଷ୍ୟ-ରସା ।

[ ୬ ]

ତୁମେ ମୃତ ବରଷର ଶେଷ-ବାଦ୍ୟ-ଧ୍ୱନି ଧର,
ଗତ ନିଶା ତହିଁ ତୁଙ୍ଗ ସମାଧି-ଶମ୍ବ,
ଧୂମ-ଅନଳ ଉଦ୍‌ଗାର ହେବ ତହିଁ ବାନାଧାର
ଏକୀଭୂତ ତୁମ ମହାମନ୍ତ୍ର-କଦମ୍ବ,
ବରଷିବ କରକା, ପୁଣ
ମୂଷଳ-ନୀରଧାର, ଶୁଣ ହେ, ଶୁଣ !

[ ୭ ]

ନିଶ୍ଚଳ-ଶୀତଳ ଦିନେ ମହାନଗରୀ-ପୁଲିନେ
ଶୁଣି ସ୍ଫଟିକ-ତରଙ୍ଗ-ଶୟନ ଗାନ,

ଭେଲେ ନୀଳ-ପାରାବାର                    ଶୋଇଥିଲା ନେଣେ ଧୀର
ଭସେ ବୀଚି-ଭଙ୍ଗେ ଗତି ସ୍ୱପ୍ନମାନ,
ତୁମରି ପରଶ ଚମକେ
ଜାଗିଲା ସାଗର ନିଦ୍ରାଳସ ପଲକେ ।

[ ୮ ]

ତହୁଁ ଆସେ ଦୁର୍ନିବାର—                    ଗତି ! ତୋଟେ ପାରାବାର
ମହାଭୟେ ପତ୍ର ଛାଡ଼ି ଦେଲା ସରଣୀ,
ଆଲୋଡ଼ି ବାତ୍ୟା ତଳ                    ଉଠାଇଲା କୋଳାହଳ
ନଟିଲେ ତରଙ୍ଗ-ଶିର ପ୍ରମାଦ ଗଣି,
କଲରବେ ଜଳ-ବିହଙ୍ଗ
ଉଠିଲେ ସହସା ଦେଖି ନୀଳ ତରଙ୍ଗ ।

[ ୯ ]

ସଜ ପୁଷ୍ପବନ୍ତ ଘନ                    ଶ୍ୟାମ-ଶୈବାଳ-ବନ
ଛନ୍ଦକ୍ଷେ ଯାହାର ହଜିଯାଏ ଚେତନ !
ଅନୁଭବ ତୁମ ସ୍ପର୍ଶ                    ପ୍ରଳୟ-ଘୋର-ନାଦେ
ସିନ୍ଧୁ ତଳେ ନାଚେ ଦଳେ ପାଣ୍ଡୁ-ବରଣ,
ଛିଡ଼ିଯାଏ ଶୈବାଳ ଗୁଣ,
ମ୍ଳାନ ମୁଖେ ଚାହେଁ ପଦ୍ମ, ଶୁଣ ଶୁଣ ।

[ ୧୦ ]

ହୋଇଥିଲେ ପଦ୍ମ ମୁଁ,                    କିବା ଖଣ୍ଡେ ମେଘ କ୍ଷୁଦ୍ର
ଉଡ଼ନ୍ତି କି ହସନ୍ତି ତୋ ସଙ୍ଗେ ନଭସେ,
ହୋଇଥିଲେ ମୁଁ ଲହରୀ                    ନମନ୍ତି ତୋ ପଦେ ଥରେ,
ଭୋଗନ୍ତି ତୁମ ଉଦ୍ଦାମ ବଳ ସାଧ୍ୱସେ,

ଦେହ-ଦ୍ୱାରେ ଅଟେ ମୁଁ ସ୍ଥାନ,
ହେ କୁମାର ! ତୁମଠାରୁ ତରୁଣୀ ସ୍ୱାଧୀନ ।

[ ୧୧ ]

ଶୈଶବେ ଥିଲା ଚଞ୍ଚଳ, ଯେବେ ମୋର ମନୋବଳ
ହୋଇଲା କିଣ୍ଟୁ ଥିଲା ତୁମ ଘୋର ଶକ୍ତି,
ସଖା ଜବେ ତୁମ ସଙ୍ଗେ ଝୁଲୁଥିଲି ବିଶ୍ୱରଙ୍ଗେ
ଆଜି ସେହି ଶିଶୁ ଦିନ ଥିଲେ ମୋ ଗତି,
ଏବେ ଲୋଡ଼ାରେ କି ଜୀବନେ
ଝୁଲୁଥାନ୍ତି ସିନ୍ଧୁତରେ ନତ-ବଦନେ ।

[ ୧୨ ]

ତୋଳ ମୋତେ ମହାବଳୀ, ବାତପଥ ମେଘ ଭଳି
ବନ୍ଧୁର ଜୀବନପଥେ ପଡ଼ି ମୁଁ ମରେଁ,
ଆସାଧ ଯେତେକ ସ୍ୱପନ ମୋର ଏ ମର-ଜୀବନ,
ଦୁର୍ବହ ପାଷାଣରେ ଜଡ଼ାଇ ଧରେ,
ତୁମ ପରି ମୁହିଁ ସରତେ
ଶୃଙ୍ଖଳ-ବିଦ୍ରୋହୀ, ଉଗ୍ର, ବ୍ୟଗ୍ର ଯୁଗତେ ।

[ ୧୩ ]

କର ମୋତେ ତୁମ ବୀଣା ଶୁଷ୍କବନ ସମ ହୀନା,
ପତ୍ର ପ୍ରାଏ ଯେବେ ଖସି ପଡ଼େ ମୋ ବଳ
ତୁମ ଗାନ ମହାସ୍ୱାନ ଧ୍ୱନିବ ଗମ୍ଭୀର ତାନ
ଆମ ଦେହ ଅଙ୍ଗେ ସମଭାବେ ତରଳ,
ଶୋକରସେ ହେବ ମଧୁର,
ମିଶି ପାଅ ତେଜସ୍ୱୀ ମୋ ପ୍ରାଣେ ବିଧୁର ।

[ ୯୪ ]

ଉତ୍ତାଇ ଶୁଷ୍କ ପଲ୍ଲବେ · ନବୀନ-ଶ୍ୟାମ-ବାଲବେ
ତୁମେ ସାଜ ଦଅ ସିନା ଗିବିକାନନ,
ତେସନ ଆଜ ମୋ ଦ.ସି— ନବୀନ ଭାବନା ଗ୍ରଣି
କ୍ରଣି ଦଅ ବକ୍ଷେ, ଆଯୁ ନବ ଜୀବନ,
ଏସ୍ମାବୃତ ସ୍ମୃତିଧାନଳ
ମଞ୍ଜର ପାନବ ମେଲେ ଦହ୍ନ ଚଞ୍ଚଳ !

[ ୯୫ ]

ଧନଳ ମୋ ପବମାନ ଝୁଙ୍କାର ଶଙ୍କଡମାନ,—
ମୋ ଅଧରେ ହୃଅ ସ୍ଫୁଟ୍ ସସାର କାନେ
ଗାଇବାକୁ ଫେର୍ ଫେର୍ ଭବିଷ୍ୟ-ଭାରତୀ-ଦେ..
ନବ ଜାଗରଣଶଂସ। ଗମ୍ଭୀରତାନେ,
ଗ୍ରାସ କଲେ ଶୀତ ଅନ୍ତ,
ନନ୍ଦବ କି ସଙ୍ଗେ ଦୁରେ ଋତୁ ବସନ୍ତ ?

# ପରିଚୟ

## କଳସା ଚଉତିଶା—ବଚ୍ଛା ଦାସ

ଚଉତିଶା ଓଡ଼ିଆ ସାହିତ୍ୟର ପ୍ରାଚୀନ ସମ୍ପଦ । ଅଦ୍ୟାବଧି ପ୍ରାପ୍ତ ଚଉତିଶାମାନଙ୍କ ମଧ୍ୟରେ ଏହା ପ୍ରାଚୀନତମ । କଳସା ରାଗ, ରାଗିଣୀ ନୁହେଁ ମାତ୍ର ଏହା ଗୋଟିଏ ବାଣୀ ବା ବୃତ୍ତ । କଳସାର ନିର୍ଦ୍ଦେଶ ସାରଳା ମହାଭାରତରେ ଥିବାରୁ ବଛା ଦାସ ସାରଳା ଦାସଙ୍କ ପୂର୍ବବର୍ତ୍ତୀ ଓ ୧୩ଶ ଶତାବ୍ଦୀର କବି । ଏହି ଚଉତିଶାରେ ହରପାର୍ବତୀଙ୍କ ବିବାହ ବର୍ଣ୍ଣିତ । ଏଥିରେ ହାସ୍ୟରସ ବିଳସିତ ।

ଟୀକା:—ହେମନ୍ତ—ହିମବନ୍ତ, ହିମାଳୟ । ଦୁଲଣି—(ଦୁଲଣୀ, ଦୁଲ୍ଲଳୀ) କନ୍ୟା । ସାହାସେଣ (ଶ୍ୱାସ ଶବ୍ଦଜ)—ଊର୍ଦ୍ଧ୍ୱ ଶ୍ୱାସରେ । ମୁଦୁରି (ମୁଦ୍ରା ଶବ୍ଦଜ)—କାଠ ବା କଇଁଛ ଖୋଳରେ ତିଆରି ମୋଡ଼ିଆବିଶେଷ, ଯାହା ସାଧୁମାନେ କାନରେ ପିନ୍ଧନ୍ତି । ଦରଶନ—ଦେଖା । ଚକୋରି—(ଚକରି, ଚକ୍ରୀ) କପଟିଆ । ଛିନ—କ୍ଷୀଣ । ଗନ୍ଥା (କନ୍ଥା)—ଛିଣ୍ଡା ଲୁଗା ବା କନାରେ ସିଲାଇ ହୋଇ ତିଆରି ଗୋଦଡ଼ି ବା ବିଛଣା । ଜଙ୍ଗମ—ଚଳନଶୀଳ, ମନୁଷ୍ୟ (ଏଠାରେ ପଶୁ) । ନିସତେଣ (ନିଃସତ୍ତ୍ୱ ଶବ୍ଦଜ) ବଳହୀନତାରେ । ଠାକରି—ଚାନ୍ଦା । ଅଳ୍ପିତ—ଅରକ୍ଷିତ, ନିଃସହାୟ । ତାବଏ—ଗୋଟିଏ ତମ୍ବୁ । ଓଗର—ଠକ, ଧୂର୍ତ୍ତ । ତାଙ୍ଗୁଆ—ଡେଙ୍ଗା ଓ ପାତଳ । ଡୋର—ସ୍ଥାନ । ଡୋକର—ବୁଢ଼ା, ନିର୍ଜୀବ । ଅଣଖ—(ଅଲଖ, ଅଲେଖ) ଅଳତା ଓ ଗହଣା ପ୍ରଭୃତିରେ ବେଶ କରାଇବା । ତକ୍ଷଣେ—ହଠାତ୍ । ଫରମାଣ—ଆଦେଶ । ଫାଙ୍କ—ଅଧିକ-ଭାବରେ । ଫରସରେ—ନିର୍ମଳରେ । ଭାଗ୍ୟବନ୍ତ—ଭାଗ୍ୟବନ୍ତୀ—ପ୍ରାଚୀନ ଓଡ଼ିଆରେ ମୁକ୍ତ ପ୍ରୟୋଗ । ଓଡ଼ିୟାଣୀ—କଟିମେଖଳା, ଗୋଠ ଚନ୍ଦ୍ରହାର ପ୍ରଭୃତି । କଟସ୍ମା (କଟକମ୍ବା, କଟକମ୍ବା, କଟକମା)—କନ୍ୟାଦାନ ସମୟରେ କନ୍ୟାପିତା

ଯେଉଁ ମସିଣାରେ ବସନ୍ତି । ଛନ୍ଦେ—ସ୍ୱଚ୍ଛନ୍ଦେ । କାଦ (କର୍ଦ୍ଦମ)—ବିବାହର ଚତୁର୍ଥ ଦିବସରେ ବରକନ୍ୟା ନଗର ଭ୍ରମଣ କରି ସାରି ପୋଖରୀରେ କାଦୁଅ ପକାପକି ହୋଇ ସ୍ନାନ କରିବା ।

---

## ଲାଖବିନ୍ଧା

### ମହାଭାରତ—ସାରଳା ଦାସ

ସାରଳା ଦାସଙ୍କ ପୈତୃକ ନାମ ସିଦ୍ଧେଶ୍ୱର ପରିଡ଼ା । ତାଙ୍କ ପିତାଙ୍କ ନାମ ଯଶୋବନ୍ତ ପରିଡ଼ା । ସେ ଜାତିରେ କୃଷିଜୀବୀ । କଟକ ଜିଲ୍ଲା ଝଙ୍କଡ଼ ଗ୍ରାମରେ ୧୩ଶ ଶତାବ୍ଦୀର ଶେଷ ଭାଗରେ ସେ ଜନ୍ମଗ୍ରହଣ କରିଥିଲେ । କେତେକଙ୍କ ମତରେ ସେ ସୂର୍ଯ୍ୟବଂଶୀୟ କପିଳେନ୍ଦ୍ର ଦେବଙ୍କ ସମସାମୟିକ ଓ ୧୫ଶ ଶତାବ୍ଦୀର ପ୍ରଥମ ଭାଗର ବ୍ୟକ୍ତି । କିନ୍ତୁ ଜ୍ୟୋତିଷ ବିଚାର ଓ ଭାଷା ତଥା ଆଭ୍ୟନ୍ତର ପ୍ରମାଣ ବିଚାରରେ ସେ କପିଳ ନରସିଂହ ଦେବଙ୍କ ସମକାଳୀନରୂପେ ଜଣା ଯାଉଅଛନ୍ତି । ସେ ମହାଭାରତ, ବିଲଙ୍କା ରାମାୟଣ ଓ ଚଣ୍ଡୀ ପୁରାଣ ଲେଖିଅଛନ୍ତି । ସଂସ୍କୃତ ଗ୍ରନ୍ଥମାନଙ୍କର ଏ ଗ୍ରନ୍ଥଗୁଡ଼ିକ ଅନୁବାଦ ନୁହେ—ଅନେକ ନୂଆ କଥା ଯୋଗ ହୋଇଅଛି ଓ ଅନେକ କଥା ମଧ୍ୟ ଛାଡ଼ି ଅଛି । ସାରଳା-ଭାରତ ୧୪ଶ ଶତାବ୍ଦୀର ପ୍ରଥମାଂଶରେ ଲିଖିତ । ଭାଷା ସହଜ, ଭାବ ସରଳ, କଳ୍ପନା-ଶକ୍ତି ଅଦ୍ଭୁତ—ଅନ୍ୟ ଗୁଣମାନଙ୍କ ମଧ୍ୟରେ ଏହା ବିଶେଷ-ଭାବରେ ପରିଲକ୍ଷିତ ହୁଏ । ସିଦ୍ଧପୁରୁଷରୂପେ ସାରଳା ଦାସ ପରିଚିତ ।

**ଟୀକା:**—ତ୍ରିକଚ୍ଛ—ସାମନାରେ ଦୁଇ ଫେର ଓ ପଛରେ ଫେରେ ମାରି ଲୁଗା ପିନ୍ଧିବା ରୀତି । ନବଗୁଣ—ନଅ ସରି । ଅଧ୍ୟାନ—ଅଧ୍ୟୟନ । ଦ୍ୱାଦଶତିଳକ—ଲଲାଟ, ଉଦର, ବକ୍ଷ, କଣ୍ଠକୂପକ, ଦକ୍ଷିଣକୁକ୍ଷି, ବାହୁ, କନ୍ଧର ବାମ ପାର୍ଶ୍ୱ, ବାମ ବାହୁ ଅନ୍ୟ କନ୍ଧର, ପୃଷ୍ଠ ଓ କଟି—ଏହି ଦ୍ୱାଦଶ ସ୍ଥାନରେ କେଶବ, ନାରାୟଣ, ମାଧବ, ଗୋବିନ୍ଦ, ବିଷ୍ଣୁ, ମଧୁସୂଦନ, ତ୍ରିବିକ୍ରମ, ବାମନ, ଶ୍ରୀଧର, ହୃଷୀକେଶ, ପଦ୍ମନାଭ, ଦାମୋଦରଙ୍କୁ ଯଥାକ୍ରମେ ସ୍ମରଣ କରି ତିଳକ-ମାନ ଧାରଣ କରିବା । ଶ୍ରୀବତ୍ସ—ବିଷ୍ଣୁଙ୍କ ବକ୍ଷସ୍ଥିତ ଭୃଗୁଙ୍କ ପାଦଚିହ୍ନବିଶେଷ;

ଏଠାରେ ତଣ୍ଡୁଳୀ ଚିତ୍ରବିଶେଷ । କାଣ୍ଡି—(କାଣ୍ଡି, କାଣ୍ଡ) ବେଦର ଏକ ଅଂଶ । ସ୍ରୁବ ଓ ସ୍ରୁଚ—ହୋମରେ ଘୃତ ପ୍ରକ୍ଷେପ କାଷ୍ଠ ପାତ୍ରଦ୍ୱୟ (ଡଙ୍କା ପତ୍ର) । ପ୍ରୋକ୍ଷଣୀ—ଜଳସେଚନ ପାତ୍ର । ଦୋଃଦ୍ୱୟ—ଦ୍ୱିବାହୁ । ଚକ୍ରସ୍ୱାମୀଦେବତା—ଚକ୍ରଧାରୀ ବିଷ୍ଣୁ, ଏଠାରେ ଚକ୍ରଚିହ୍ନ ଥିବା ବିଷ୍ଣୁଙ୍କ ଶାଳଗ୍ରାମ । ସମ୍ଭ୍ରମ—ଆଡ଼ମ୍ବର । ବିଦେଶ—ବିଦେଶୀ ଅର୍ଥରେ । ପଞ୍ଚଦିଗପାଳ—ଦଶଦିଗପାଳଙ୍କ ମଧ୍ୟରୁ ପାଞ୍ଚ ଜଣ—ପୂର୍ବଦିଗ—ଇନ୍ଦ୍ର, ଦକ୍ଷିଣ—ଯମ, ପଶ୍ଚିମ—ବରୁଣ, ଉତ୍ତର—କୁବେର, ଅଗ୍ନିକୋଣ (ପୂର୍ବ-ଦକ୍ଷିଣ)—ଅଗ୍ନି, ନୈଋତ (ଦକ୍ଷିଣ-ପଶ୍ଚିମ)—ନୈଋତ, ବାୟୁ—(ଉତ୍ତର-ପଶ୍ଚିମ କୋଣ) ବାୟୁ, ଐଶାନ୍ୟ (ଉତ୍ତର-ପୂର୍ବ-କୋଣ)—ଈଶାନ, ଶିବ; ଊର୍ଦ୍ଧ୍ୱ ଦିଗର—ବ୍ରହ୍ମା, ଅଧୋ ଦିଗର—ଅନନ୍ତ । କଣଯୂ (କନକ ଦଣ୍ଡ)—ପୂଜା । ଆଚମନ—ଆଚମନ । ସମାର୍ଜ୍ଜିଲ—ପାଦ୍ୟ-ଅର୍ଘ୍ୟ ଦେଇ ସମ୍ମାନ କରି । କର୍ଣ୍ଣାଞ୍ଚଳ—କର୍ଣ୍ଣାଳଙ୍କାର ଅର୍ଥରେ । ଜଗଦଳ—(ଜଗଦଳ) ଅତି ସୁନ୍ଦର ଅଳଙ୍କାରବିଶେଷ । ସୁସଞ୍ଚ—ଅତି ସୁନ୍ଦର । ଅନର୍ମିତ (ଅନର୍ମିତେ)—ଅକାରଣରେ । ସୁଧାଚକ୍ର—ବଜ୍ର (ବିଦ୍ୟୁତ୍‌ସହ ଭୂପୃଷ୍ଠ ବଜ୍ରପାତ) । କୁଙ୍କୁମ—ଜାଫ୍ରାନକେଶରଚୂର୍ଣ୍ଣ ବା ପ୍ରଲେପବିଶେଷ ଯାହା ହଳଦୀଗୁଣ୍ଡା, ଚାଉଳ ରସ, ଫିଟିକିରି ପ୍ରଭୃତିର ମିଶ୍ରଣରେ ପ୍ରସ୍ତୁତ—ଏହା ମୁଖରେ ମଖା ହୋଉଥିଲା । ସାଞ୍ଜୋଇଲେ—ସଜାଇଲେ—ସମ୍ୟକ ଯୋଜନା କଲେ । ଲୁବ୍ଧୁଛନ୍ତି—ଗୁଣୁଗୁଣୁ ହେଉଛନ୍ତି । ଅଷ୍ଟରତ୍ନ—ରତ୍ନ ନବରୂପେ ଗୃହୀତ—ହୀରା, ମୋତି, ପ୍ରବାଳ, ନୀଳା, ବୈଦୂର୍ଯ୍ୟ, ପଦ୍ମରାଗ, ମାଣିକ୍ୟ, ଗୋମେଦ ଓ ମରକତ । ଗୋମେଦ ଗ୍ରହଣ ନ କଲେ ଅଷ୍ଟରତ୍ନ । ଗଣିକା—ମାହାରୀ, ନୃତ୍ୟଗୀତ କୁଶଳୀ, ସାଧାରଣ ବେଶ୍ୟାଠାରୁ ଉତ୍କୃଷ୍ଟ, ରାଜା ଓ ଦେବାନଯୋଗରେ ଥାନ୍ତି । ଅଳେଖ (ଅଲଗ, ଅଲଗ)—ଅଳତା ଓ ଗନ୍ଧସାର ଲଗାଇ ବେଶ ହେବା । ବେଶନମନ—ଅଳଙ୍କାର, ବେଶଯୁକ୍ତ । ଦାସୀନେତ—ହଳଦିଆ ବା ନୀଳ ପାଟ ଶାଢ଼ୀ, ବିଶେଷତଃ ନୀଳଶାଢ଼ୀ, ନୀଳ ବା ହଳଦିଆ ସୂତାର ଲତାବିଶେଷ ନାମ ଦାସୀ ( ଦାସକେରଣ୍ଡା ) । ବ୍ରହ୍ମବୀଣା—ସରସ୍ୱତୀଙ୍କ ବୀଣା, କଚ୍ଛପୀ । ଉଭରିଲେ—ଠେକି ଧଇଲେ ।

---

## ରାବଣର ଆତ୍ମପ୍ରକାଶ

### ଜଗମୋହନ ରାମାୟଣ—ବଳରାମ ଦାସ

ବଳରାମ ଦାସଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତାଙ୍କ ନାମ ଜମ୍ବୁ ଦେବୀ । ସେ ବର୍ଣ୍ଣରେ ବୈଶ୍ୟ । ସୋମନାଥ ମହାପାତ୍ର ପୁରୁଷୋତ୍ତମ ଦେବଙ୍କର ଜଣେ ମନ୍ତ୍ରୀ ଥିଲେ । ବଳରାମ ଦାସ ପ୍ରତାପରୁଦ୍ର ଦେବଙ୍କ ସମକାଳୀନ, ସେ ସମ୍ଭବତଃ ୧୪୭୨ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୬ଶ ଶତାବ୍ଦୀର ମଧ୍ୟଭାଗରେ ମର୍ତ୍ତ୍ୟଲୀଳା ସାଙ୍ଗ କରିଥିଲେ । ବଳରାମ ଦାସ ଓଡ଼ିଶାର ପଞ୍ଚସଖାଙ୍କ ମଧ୍ୟରେ ଜ୍ୟେଷ୍ଠ ଓ ଶ୍ରୀଚୈତନ୍ୟଙ୍କ ଶିଷ୍ୟ ତଥା ସଖା ଥିଲେ । ସେ ଜଗନ୍ନାଥ ଦାସଙ୍କର ଗୁରୁ ଓ ପ୍ରତାପରୁଦ୍ର ଦେବ ତାଙ୍କୁ ଗୁରୁବତ୍ ମାନ୍ୟ କରୁଥିଲେ । ସେ ଅନେକ ଗ୍ରନ୍ଥ ଲେଖିଅଛନ୍ତି ତନ୍ମଧ୍ୟରେ ରାମାୟଣ ଶ୍ରେଷ୍ଠ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କୁ କବିଶ୍ରେଷ୍ଠରୂପେ ସମ୍ମାନ କରି "କୃପାସିନ୍ଧୁ" ବୋଲି ବୈଦେହୀଶର ପ୍ରାରମ୍ଭରେ ଆହ୍ୱାନ କରିଅଛନ୍ତି । ସେ ପଞ୍ଚସଖା ପ୍ରକୃତରେ କୃପାସିନ୍ଧୁ ଥିଲେ । ତାଙ୍କର ଶୁଦ୍ଧ ସରଳ ଭକ୍ତିମୟ ଅନୁରୂପ ଭାଷାର ସହଜ ସରଳ ମଧୁର ଭାବ ସର୍ବତ୍ର ପ୍ରକାଶିତ । ରାବଣର ଆତ୍ମପ୍ରକାଶ ଯାହା ଉଦ୍ଧୃତ ହୋଇଛି ତାହାର ସୂଚନା ସଂସ୍କୃତ ଅଧ୍ୟାତ୍ମ ରାମାୟଣରେ ଅଛି । ଭକ୍ତକବି ବଳରାମ ତାହା ବିସ୍ତୃତ ଓ ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି ।

**ଟୀକା:**—କୁଶଯୋନି—ବ୍ରହ୍ମା । ଭୂପଦନ୍ତୀ—ଭୂପବନ୍ତର ସ୍ତ୍ରୀ, ସୁନ୍ଦରୀ । ଦଶଈଶ—ଦଶ ଦିଗର ପ୍ରଭୁ, ରାବଣ । ବାରିଷ୍ଠ—ସ୍ୱର୍ଗ, ଏଠାରେ ବୈକୁଣ୍ଠ । ଉଦ୍ୟାମ—କାର୍ଯ୍ୟ ହେଉଥିବା, ସଭ ବସିଥିବା (ଉଦ୍ୟମ ଶବ୍ଦଜ) । ମହାମେରୁ—ଅଷ୍ଟମହାନ୍ ବା ଅତି ଶ୍ରେଷ୍ଠ ଭଗବାନ୍, ମେରୁଠାରୁ ବଡ଼ । ଦ୍ୱାରପାଳକେ—ବ୍ରହ୍ମାଙ୍କ ମାନସ ପୁତ୍ରଙ୍କ ଦ୍ୱାରା ଅଭିଶାପ ପାଇଥିବା ବିଷୟ । ମାତାଗୁଣବହ—ଅସୁରୀ ଗୁଣ ବହି ରାବଣର ମାତା କୈକଶୀ, ସୁମାଳୀ ଅସୁରର କନ୍ୟା ।

---

## ଯଦୁ ଅବଧୂତ ସମ୍ବାଦ

## ଏକାଦଶ ସ୍କନ୍ଧ ଭାଗବତ—ଜଗନ୍ନାଥ ଦାସ

ଜଗନ୍ନାଥ ଦାସଙ୍କ ପିତାଙ୍କ ନାମ ଭଗବାନ ଦାସ, ମାତାଙ୍କ ନାମ ପଦ୍ମାବତୀ ଦେବୀ । ସେ ପ୍ରାୟ ୧୪୯୧-୯୨ ଖ୍ରୀଷ୍ଟାବ୍ଦରେ ପୁରୀ ଜିଲ୍ଲା ଅନ୍ତର୍ଗତ କପିଳେଶ୍ୱର ପୁରରେ ଜନ୍ମଗ୍ରହଣ କରି ୧୫୫୧-୫୨ ଖ୍ରୀଷ୍ଟାବ୍ଦରେ ବୈକୁଣ୍ଠ ପ୍ରାପ୍ତ ହୋଇଥିଲେ । ସେ ଯେପରୀ ପଣ୍ଡିତ ସେହିପରି ଧାର୍ମିକ ଥିଲେ । ସେ ସଂସ୍କୃତରେ ଓ ଓଡ଼ିଆରେ ଅନେକ ଧର୍ମଗ୍ରନ୍ଥ ଲେଖି ଅଛନ୍ତି । ଓଡ଼ିଆ ଭାଗବତ ତନ୍ମଧ୍ୟରେ ଶ୍ରେଷ୍ଠ । ଓଡ଼ିଆ ଭାଗବତ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ ନୁହେ । କିନ୍ତୁ ଏଥିରେ ଅନେକ ମନୋହର ଆଖ୍ୟାନ ଓ ବର୍ଣ୍ଣନା ଯଥାଯଥ ସନ୍ନିବେଶିତ ହୋଇ ଥିବାରୁ ଏବଂ ସରଳ ଭାବରେ କଠିନ ତତ୍ତ୍ୱ ବୁଝାଇ ଦିଆ ଯାଇ ଥିବାରୁ ଏହାର ସ୍ଥାନ ସଂସ୍କୃତ ଭାଗବତଠାରୁ ଉଚ୍ଚରେ କହିଲେ ଅସଙ୍ଗତ ହେବ ନାହିଁ । ସେ ଚୈତନ୍ୟଚନ୍ଦ୍ରଙ୍କର ଅତୀବ ପ୍ରିୟ ଥିଲେହେଁ ତାଙ୍କଠାରୁ ଅତିବଡ଼ ଆଖ୍ୟା ପାଇଥିଲେ । ତାଙ୍କ ମତାବଲମ୍ବୀମାନେ ଅତିବଡ଼ୀ ରୂପେ କଥିତ । ପ୍ରତାପରୁଦ୍ର ଦେବ ତାଙ୍କୁ ଗୁରୁ ତୁଲ୍ୟ ମାନ୍ୟ କରୁଥିଲେ । ଓଡ଼ିଶାର ଧର୍ମଭାବ ଓ ଭାଷାଜ୍ଞାନର ପ୍ରସାର ଜଗନ୍ନାଥ ଦାସଙ୍କ ଭାଗବତ ହେତୁ । ଏହା ସର୍ବଥା ସ୍ୱୀକାର୍ଯ୍ୟ ।

**ଟୀକା:**—ଯଦୁ—ଯଯାତିଙ୍କ ଔରସରୁ ଶୁକ୍ରଙ୍କ କନ୍ୟା ଦେବଯାନୀଙ୍କ ଗର୍ଭରୁ ଜାତ, ଏ ବଡ଼ ଧର୍ମଶୀଳ । ଏହାଙ୍କ ବଂଶରେ କୃଷ୍ଣଚନ୍ଦ୍ରଙ୍କ ଜନ୍ମ । ଅବଧୂତ—ସଂସାର ବିଷୟାସକ୍ତି ତ୍ୟାଗୀ ସନ୍ନ୍ୟାସୀବିଶେଷ । ଯେ ବର୍ଣ୍ଣାଶ୍ରମ ତ୍ୟାଗପୂର୍ବକ ଆତ୍ମାରେ ପରମାତ୍ମାକୁ ଦର୍ଶନ କରି ଜଗତକୁ ଏକଭଳି ମଣି ବିଚରଣ କରନ୍ତି ସେ ଅବଧୂତ ।

> "ଅକ୍ଷରତ୍ୱାଦ୍‌ବରେଣ୍ୟତ୍ୱାଦ୍ ଧୂତସଂସାରବନ୍ଧନାତ୍
> ତତ୍ତ୍ୱମସ୍ୟର୍ଥ ସିଦ୍ଧତ୍ୱାଦବଧୂତୋଽଭିଧୀୟତେ" ।

ସର୍ବପୁଷ୍ପବନ୍ଧ—ସବୁ ଫୁଲରୁ ରସ ଗ୍ରହଣ କରେ ବୋଲି ଏପରି ନାମ । ସଂସ୍କୃତ ଭାଗବତରେ "ମଧୁକୃତ" କଥିତ । କୁରର—ପକ୍ଷୀବିଶେଷ, ଏକ ପ୍ରକାର ଛଞ୍ଚାଣ "ଉତ୍‌କ୍ରୋଶ କୁରରୌ ସମୌ"—ଅମର । ମଧୁହାରୀ—ମଧୁହରଣକାରୀ

ବ୍ୟାଧ । ପେଶସ୍କାରୀ—ସଂସ୍କୃତ ଭାଗବତରେ ସୁପେଶସ୍କୃତ "ସୁପେଶମ୍ ଅତି-ଶୋଭନଂ ରୂପଂ କୀଟସ୍ୟ କରୋତି ଇତି—ତଥା ଭ୍ରମରବିଶେଷ । କୁମ୍ଭାରୁଅ ପୋକ—ଯେ ଅନ୍ୟ ପୋକକୁ ଆଣି ନିଜ ବସାରେ ରଖେ ଏବଂ ସେହି ପୋକକୁ ନିଜରୂପ ପ୍ରଦାନ କରେ । ପଟଗନ୍ଧନୁଁ—ବୃକ୍ଷତୃଣନିର୍ଯ୍ୟାସ ପ୍ରସବକାରୀ ଘନ ପଟଳରୁ । ଘଟାକାଶ—ଆକାଶ ସର୍ବବ୍ୟାପୀ ହେବୁ ଘଟଆଦିରେ ରହି ସୁଦ୍ଧା ଯେପରି ପରିଚ୍ଛିନ୍ନ ହୁଏ ନାହିଁ । ଏଣୁ ମୁଁ ଲୋକେ ଭୟଙ୍କର—ଦୂରରୁ ଭଜନୀୟ, କାରଣ ମୁଁ ଦୁର୍ଦ୍ଧର୍ଷ (ସଂସ୍କୃତ ଭାଗବତର ଶବ୍ଦ) ।

ପରାଭବୋ ଧର୍ଷଣଞ୍ଚ ସ୍ୟାଦବଜ୍ଞାନମଥାପି ବା
ତତଃ ସତ୍ସୁ ସଦା କୁର୍ଯ୍ୟାତ୍ ସନ୍ନିଶସ୍ୟାସନଂ ନ ଚ ॥

ପାପ ନାଶଇ ପୂର୍ବାପର—ଭୂତ ଓ ଭବିଷ୍ୟତ ଏହି ଦୁଇ କାଳର ପାତକକୁ ବିନାଶ କରେ ।

ଆପଣ ମାୟାରେ......ପ୍ରକାଶଇ—ଭଗବାନ୍ ସ୍ୱୀୟ ମାୟାରଚିତ ଦେବ ତିର୍ଯ୍ୟକ୍ ବା ବିପ୍ରଶୂଦ୍ରାଦି ବିବିଧ ଶରୀରରେ ପ୍ରବେଶ କରି ବିଭିନ୍ନ କାଷ୍ଠପ୍ରବିଷ୍ଟ ଅଗ୍ନି ତୁଲ୍ୟ ଦେଖାଯାନ୍ତି । ( ଅଗ୍ନି ଯେପରି ଭିନ୍ନ ଭିନ୍ନ କାଷ୍ଠର ଆକୃତି ଧାରଣ କରି ଭିନ୍ନ ଭିନ୍ନ ଦେଖାଯାଏ ସେପରି ଭଗବାନ୍ ଭିନ୍ନ ଭିନ୍ନ ଶରୀରରେ ପ୍ରବେଶ କରି ଭିନ୍ନ ଭିନ୍ନ ବୋଧ ହୁଅନ୍ତି ) ।

ଜୀବର ନୁହେ ପରିଗ୍ରହ—ଜନ୍ମରୁ ମରଣ ଯାଏ ଯାବତୀୟ ବିକାର ଦେହରହିଁ ଘଟେ—ଜୀବର ଆତ୍ମାର କୌଣସି ପ୍ରକାର ବିକାର ହୁଏ ନାହିଁ । ପରିଗ୍ରହ—ଧାରଣ । ଅକ୍ଷୟ ଏକ କଳା ଶେଷେ—ଚନ୍ଦ୍ରଙ୍କର ହ୍ରାସବୃଦ୍ଧି ହୁଏ ନାହିଁ କିନ୍ତୁ ଚନ୍ଦ୍ରଙ୍କର କଳା ସବୁର ହ୍ରାସବୃଦ୍ଧି ହୁଏ ।

ଯେମନ୍ତ ରବିବିମ୍ବ......ବିକାରେ—ନିଜ ରୂପରେ ଥିବା ସୂର୍ଯ୍ୟଙ୍କ ପରି ନିଜରୂପରେ ଥିବା ଆତ୍ମା (ଜୀବାତ୍ମା) ଅଭିନ୍ନ କିନ୍ତୁ ଭିନ୍ନ ଭିନ୍ନ ଜଳ, ତୈଳାଦି ଉପାଧିରେ ପ୍ରତିବିମ୍ବିତ ସୂର୍ଯ୍ୟଙ୍କ ପରି ଭିନ୍ନ ଭିନ୍ନ ଦେହ ରୂପ ଉପାଧିରେ ପ୍ରବିଷ୍ଟ ଆତ୍ମା ସ୍ଥୂଳ ବୁଦ୍ଧି ଲୋକଙ୍କ ଦ୍ୱାରା ଭିନ୍ନ ଭିନ୍ନ ପେରି ଲକ୍ଷିତ ହୁଏ

"ବୃହ୍ମୂ ଉତ୍ତର" ଠାରୁ କେତେକ ପଦ ମୂଳଗ୍ରନ୍ଥରେ ନାହିଁ ଓ କେତେକ ବିଷୟ କବି ଯୋଗ କରି ଦେଇ ଅଛନ୍ତି । କୁମ୍ଭୀପାକ—ନରକ-ବିଶେଷ । ନିଗମ—ବେଦ, ବେଦାନ୍ତ ।

## ଉଷାଭିଳାଷ—ଶିଶୁଶଙ୍କର ଦାସ

ଶିଶୁଶଙ୍କର ଦାସ ୧୬ଶ ଶତାବ୍ଦୀର କବି, କାରଣ ୧୭ଶ ଶତାବ୍ଦୀର ରଘୁନାଥ ହରିଚନ୍ଦନ, ଧନଞ୍ଜୟ ଭଞ୍ଜ ପ୍ରଭୃତିଙ୍କ କାବ୍ୟମାନଙ୍କରେ ଉଷାଭିଳାଷର ବାଣୀ ନିର୍ଦ୍ଦେଶ କରି ହୋଇଅଛି । ଉଷାଭିଳାଷ ଓଡ଼ିଆ କାବ୍ୟରାଜ୍ୟରେ ଗୋଟିଏ ଅମୂଲ୍ୟ ରତ୍ନ । ବାଣାସୁର କନ୍ୟା ଉଷା ଓ ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧଙ୍କ ମିଳନହିଁ କାବ୍ୟର ବିଷୟ । କାଳିଦାସ, ଜୟଦେବ ପ୍ରଭୃତିଙ୍କ ପ୍ରଭାବ ଏହି କାବ୍ୟରେ ସୁସ୍ପଷ୍ଟ ଲକ୍ଷିତ । ଋତୁମାନଙ୍କର ସୁନ୍ଦର ବର୍ଣ୍ଣନା, ମାନବ ହୃଦୟର ଯଥାଯଥ ବିଶ୍ଳେଷଣ, ପ୍ରକୃତିର ଶୋଭା ବିକାଶ ପ୍ରଭୃତି କବିଙ୍କ କୃତିତ୍ୱର ନିଦର୍ଶନ । ଭାଷାର ରୀତି ମାର୍ଜିତ ଓ ସୁନ୍ଦର ।

ଟୀକା:—କି କେ—କିପାଇଁ । ଶିଥିଳା—ଜଡ଼ ହେଲୁ, ଶିଥିଳ ହେଲୁ । ବିଜୃମ୍ଭନ—ହଟହଟା । ଲିହ—ଲେଖ ।

## ରହସ୍ୟମଞ୍ଜରୀ

## ଋତୁବର୍ଣ୍ଣନା—ଦେବଦୁର୍ଲଭ ଦାସ

ରହସ୍ୟମଞ୍ଜରୀ ଉତ୍କଳର କାବ୍ୟରାଜ୍ୟରେ ଗୋଟିଏ ଉଜ୍ଜ୍ୱଳତମ ରତ୍ନ । ଏହାକୁ ଗୀତିକାବ୍ୟ ଆଖ୍ୟା ସ୍ୱଚ୍ଛନ୍ଦରେ ଦିଆ ଯାଇପାରେ । କବି ସମ୍ଭବତଃ ୧୭ଶ ଶତାବ୍ଦୀର ମଧ୍ୟଭାଗର ବ୍ୟକ୍ତି । ଭାଷା ସରଳ, ମାର୍ଜିତ, ଭାବ ମଧୁର ଓ ପ୍ରାଣସ୍ପର୍ଶୀ । କାବ୍ୟର ବିଷୟ କବିଙ୍କ ଉଚ୍ଚ କଳ୍ପନାପ୍ରସୂତ । ଦ୍ୱାରକାର ନାୟିକାଙ୍କ ନିକଟରେ ଗୋପୀମାନଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନହିଁ କାବ୍ୟର ବିଷୟ । କବି ଜ୍ଞାନମିଶ୍ରା ଭକ୍ତିର ଉପାସକ ।

**ଟୀକା:**—କୃଶାନୁ—ଅଗ୍ନି । ଋଷଭ—ଜ୍ୟେଷ୍ଠ ମାସ । ମେହୁ—ମେଘ । ନିର୍ଘାତ—ପ୍ରଚଣ୍ଡ ପ୍ରବାହିତ ବାୟୁଦ୍ୱୟର ପ୍ରବଳ ଆଘାତଜନିତ ଭୀଷଣ ଶବ୍ଦ । ବିସଂପିଲେ—ବିକଶିତ ହେଲେ । ଜଡ଼ିଲେ—ଜଡ଼ ପାଲଟିଲେ । ବରଷା ବିଛାଇ—ଅଳ୍ପ ଜଳ ରଖି । ବିକାନ୍ତ—ସ୍ୱାମୀଙ୍କ ପାଖରେ ନ ଥିବା ସ୍ତ୍ରୀ । ଶ୍ରୋଣେନ୍ଦ୍ରା—କାମୁକ ; ଶ୍ରୋଣେନ୍ଦ୍ରି—କାମୁକା । ଗୁଣ୍ଡକେରୀ—ରାଗ ବିଶେଷ । ପୋଇ—ପୂଆଇ, ପ୍ରାପ୍ତ କରାଇ । ଷାଋଆ ଖଣ୍ଡ—ଭଲ କନ୍ଦ । ବିହା ଭରି—ପାଦ ପୂର୍ଣ୍ଣ କରି । ଜାଡ଼ିଲ୍ଲ—ଜଡ଼ ହେଲ୍ଲ । କାକଗର୍ଭ—କୋକିଳ । ଗଉରୀ ବାରତ—ଗୌରୀପ୍ରିମ୍ଭାର ବାର୍ତ୍ତା । ଦୃଚେରୀ—ଚର୍ଚ୍ଚରୀ, ଦୋଳ ଉତ୍ସବ ; ଗୀତବାଦ୍ୟ ସହ ଅବିର ହଳଦୀ ପାଣି ପକାପକି ହୁଏ ଯହିଁରେ ।

---

## ଜଣାଣ—ସାଲବେଗ

ସାଲବେଗ ୧୭ଶ ଶତାବ୍ଦୀର ଶେଷାଂଶର ଲୋକ । ତାଙ୍କ ପିତାଙ୍କ ନାମ ଲାଲବେଗ, ସେ ଜଣେ ମୋଗଲ ସେନାପତି । ସେ ଗୋଟିଏ ସୁନ୍ଦରୀ ବାଳୁତି ବିଧବା ବ୍ରାହ୍ମଣୀ କନ୍ୟାକୁ ବଳାତ୍କାରରେ ନିଜର ସ୍ତ୍ରୀ କରିଥିଲେ । ସାଲବେଗ ତାଙ୍କର ପୁତ୍ର । ଉତ୍କଟ ବ୍ୟାଧିଗ୍ରସ୍ତ ହୁଅନ୍ତେ ସାଲବେଗ ଆତ୍ମହତ୍ୟା କରିବାକୁ ପ୍ରସ୍ତୁତ ହେଲେ । ମାତାଙ୍କ ଆଦେଶରେ ସେ ଶ୍ରୀକୃଷ୍ଣଙ୍କୁ ଆଶ୍ରୟ କଲେ । ତହୁଁ ସେ ରୋଗମୁକ୍ତ ହୋଇ ସନ୍ନ୍ୟାସୀ ହେଲେ । ଏହି ଜଣାଣରେ ଭକ୍ତ ନିଜର ମନୋଭାବ ଦୀନତା ସହ ପ୍ରକାଶ କରି ଅଛନ୍ତି; ତାହା ଅତୀବ ହୃଦୟସ୍ପର୍ଶୀ । ସେ କେତେ ଗୁଡ଼ିଏ ଭଜନ ଜଣାଣ ରଚନା କରି ଅଛନ୍ତି ।

---

## ମନ୍ଦାକିନୀ ଚଉତିଶା—ବିଷ୍ଣୁ ଦାସ

ବିଷ୍ଣୁ ଦାସ ଜଣେ ପ୍ରତିଭାଶାଳୀ ବ୍ରାହ୍ମଣ ପଣ୍ଡିତ ଓ କବି ଥିଲେ । ସେ ପ୍ରେମଲୋଚନା କାବ୍ୟ ଓ ଅନେକ ଚୌତିଶା ଲେଖିଥିବା ପ୍ରକାଶ । ସେ

ସପ୍ତଦଶ ଶତାବ୍ଦୀର ମଧ୍ୟଭାଗର କବି । ତାଙ୍କର ଭାଷା ଶୁଦ୍ଧ, ମାର୍ଜିତ ଓ ସଂସ୍କୃତ ପ୍ରାୟ । ବାଣପୁର ରାଜା ରଘୁନାଥ ହରିଚନ୍ଦନ ସ୍ୱ ଲୀଳାବତୀ କାବ୍ୟରେ ଲେଖି ଅଛନ୍ତି ଯେ ବିଷ୍ଣୁ ଦାସ ତାଙ୍କ ଗୁରୁ ଏବଂ ସେ ତାଙ୍କଠାରୁ ଶିକ୍ଷା ଲଭି କାବ୍ୟାଦି ରଚନା କରିଅଛନ୍ତି । ସେ ଜଣେ ଉତ୍କୃଷ୍ଟ କବି ଓ ତାଙ୍କ ଯଶ ସର୍ବତ୍ର ବ୍ୟାପିଛି ।

**ଟୀକା**:—କୃପାଲୋଲଲୋଚନା—କୃପାରେ ଦୟାରେ ଅନୁରାଗ ହେତୁ ଲୋଲ ସୁନ୍ଦର ଚଞ୍ଚଳ ନୟନଦ୍ୱୟ ଯାହାର—ଏପରି ସ୍ତ୍ରୀ । କଳକଣ୍ଠବଚନା—କଳକଣ୍ଠ-କୋକିଳର ବଚନ ପରି ବଚନ ଯାହାର—ଏପରି ସ୍ତ୍ରୀ । କୁନ୍ଦ ସୁନ୍ଦର-ଦନ୍ତୀ—କୁନ୍ଦ ତୁଲ୍ୟ (କୁନ୍ଦପୁଷ୍ପ ଧଳା) ସୁନ୍ଦର ଦନ୍ତ ଯାହାର—ଏପରି ସ୍ତ୍ରୀ । କରିକ୍ରୀଡ଼ାଗମନା—କରୀର କ୍ରୀଡ଼ାରେ ଗମନ ପରି ଗମନ ଯେଉଁ ସ୍ତ୍ରୀର । ଶର ଅପାଙ୍ଗ ଚନ୍ଦ୍ରମୁହାଁ—ଶର-ତୀକ୍ଷ୍ଣ-ଅପାଙ୍ଗ-ନେତ୍ରପ୍ରାନ୍ତଯୁକ୍ତ ଚନ୍ଦ୍ର ସଦୃଶ ମୁହଁ ଯେଉଁ ସ୍ତ୍ରୀର । ଗନ୍ଧର୍ବସମ୍ଭବା—ଗନ୍ଧର୍ବଠାରୁ ସମ୍ଭବ (ସମ୍ଭବ-ଜନ୍ମ) ଯେଉଁ ସ୍ତ୍ରୀର; ସଙ୍ଗୀତକୁଶଳା । ମଦର—ଖଞ୍ଜନ । ସିଂହାଣୀ—ଚତୁରୀ । ଛଇଳରେ—ଚତୁରୀରେ; ବ୍ୟଙ୍ଗୋକ୍ତି । ଛିନୋଦରୀ—କ୍ଷୀଣୋଦରୀ; ସୂକ୍ଷ୍ମକଟି । ଅନାସରେ—ଅବ୍ୟକ୍ତରେ; ଲଜ୍ଜାରେ । ଗର୍ବ ବିକ୍ରମଲବ—ଅଳ୍ପ ଗର୍ବର ପ୍ରଭାବ । ଝଗଡ଼େ—କକ୍ଷରେ । ନିସର୍ଗଚଞ୍ଚଳନେତ୍ରା—ନିସର୍ଗରେ (ସ୍ୱଭାବତଃ) ଚଞ୍ଚଳ ଅଟେ ନେତ୍ର ଯାହାର । ଏହାପରି ସୁରତପ୍ରବୃତ୍ତିପାତ୍ରା, ନିର୍ମଳ କେତକୀଗାତ୍ରା ପ୍ରଭୃତି ଶବ୍ଦର ବିଶ୍ଳେଷଣ କରି ଅର୍ଥ କରିବାକୁ ହେବ

---

## ଲୀଳାବତୀ—ରଘୁନାଥ ହରିଚନ୍ଦନ

ରଘୁନାଥ ହରିଚନ୍ଦନ ବାଣପୁରର ରାଜା, ସପ୍ତଦଶ ଶତାବ୍ଦୀର ମଧ୍ୟଭାଗର ରାଜକବି, ଲୀଳାବତୀ କାବ୍ୟର ରଚକ । ସେ ଜଣେ ବିଦ୍ୟାରସିକ ଥିଲେ । ଅନେକ ପଣ୍ଡିତଙ୍କୁ ସେ ସ୍ୱ ରାଜସଭାରେ ସମବେତ କରାଇ ସେମାନଙ୍କର ବିଦ୍ୟାର ପରୀକ୍ଷା କରିଥିଲେ । ଶେଷରେ ବିଷ୍ଣୁ ଦାସଙ୍କୁ ବଡ଼ ପଣ୍ଡିତ ଓ କବି ଜାଣି

ତାଙ୍କୁ ନିଜର ଗୁରୁ କରି କାବ୍ୟ ଲେଖିବାରେ ପ୍ରୟାସୀ ହେବେ । ଏହି କାବ୍ୟର ପ୍ରଭାବ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ପ୍ରଭୃତିରେ ପଢ଼ିବାରେ ସ୍ପଷ୍ଟ ଜଣାଯାଏ ।

**ଟୀକା**:—ରସାଣଚନ୍ଦ୍ରଗଉରୀ—ଉଜ୍ଜ୍ୱଳ ଚନ୍ଦ୍ର ସଦୃଶ ଗୌରବର୍ଣ୍ଣା । ଲତାମଞ୍ଜରୀ—ଲତାସଦୃଶ ସୁନ୍ଦରୀ ସ୍ତ୍ରୀମାନେ ତୁଳିତ ହୁଅନ୍ତି, ଅତି ସୌକୁମାର୍ଯ୍ୟ ପ୍ରତିପାଦନ ଛଳରେ ଲତାର ମଞ୍ଜରୀ—ପଲ୍ଲବାଙ୍କୁର ଗୃହୀତ । ଭରୀ—ଭରଦ୍ୱାନ୍ତା । ଅବନୀମଣ୍ଡନଶିରୀ—ପୃଥିବୀକୁ ଭୂଷିତ କରିବାରେ ଶୋଭିଦେବୀ; ପୃଥିବୀରେ ଶୋଭନୀୟ ପଦାର୍ଥ ମଧ୍ୟରେ ସର୍ବଶ୍ରେଷ୍ଠା । କାମଦହନ—କାମ ଅଗ୍ନି । ପୀୟୁଷକର—ଚନ୍ଦ୍ର । ସ୍ନେହତରଙ୍ଗକଲ୍ଲୋଳ—ସ୍ନେହ ରୂପ ଦ୍ରୁତ ତରଙ୍ଗ । ଅନ୍ତର ହେଲା ହରିତ—(ସୂର୍ଯ୍ୟଙ୍କ ଉଦୟ ସ୍ନେହରୂପ ତରଙ୍ଗ) ଶୀଘ୍ର ଦୂର କଲା । ଜଙ୍ଗମ—ପୁରୁଷ । ନେତ୍ରନିକର—ସହସ୍ରାକ୍ଷ ଇନ୍ଦ୍ର । ସୁଧାକର-ମୁକୁଟ—ଚନ୍ଦ୍ରମୌଳି ଶିବ । ଦ୍ୟଭିଚାର—ଅନ୍ୟଥାଚରଣ, ପରସ୍ପରରୂପ ପ୍ରତି ଅସକ୍ତ । କବି ଏବେ ରକ୍ଷା ପାଇଲା—କବିର ଔଚିତ୍ୟ ଯଥାଯଥ ରକ୍ଷିତ ହେଲା । ସଂଶୟଜୀବନ—ସନ୍ଦେହମୟ ପ୍ରାଣ Doubtful mood । ଶରଦ ସିତାଂଶୁମୁଖୀ—ଶରଚ୍ଚନ୍ଦ୍ରମୁଖୀ । ଆଲୋକ—ଦର୍ଶନ ।

---

## ରତ୍ନମଞ୍ଜରୀ—ଧନଞ୍ଜୟ ଭଞ୍ଜ

ଧନଞ୍ଜୟ ଭଞ୍ଜ ଘୁମୁସରର ରାଜା, ଉପେନ୍ଦ୍ର ଭଞ୍ଜଙ୍କ ପିତାମହ । ସେ ଜଣେ ଉଚ୍ଚ ଧରଣର କବି । ସେ ୧୬୩୭ ମସିହାରୁ ୧୭୦୧ ପର୍ଯ୍ୟନ୍ତ ରାଜପଣ କରିଥିଲେ । ସେ ରଘୁନାଥ (ରାମ) ବିଳାସ, ତ୍ରିପୁରସୁନ୍ଦରୀ, ରତ୍ନମଞ୍ଜରୀ, ଅନଙ୍ଗରେଖା, ମଦନମଞ୍ଜରୀ, ଇଚ୍ଛାବତୀ ପ୍ରଭୃତି କାବ୍ୟମାନ, ଅନେକ ଚୌତିଶା, ଚୌପଦୀ ଓ ରତ୍ନ, ଅଶ୍ୱ ଓ ଗଜ ପରୀକ୍ଷାଦି ଶାସ୍ତ୍ରମାନ ଲେଖି ଅଛନ୍ତି । ତାଙ୍କ କାବ୍ୟମାନଙ୍କ ପ୍ରଭାବ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟମାନଙ୍କରେ ଲକ୍ଷିତ ହୁଏ ।

**ଟୀକା**:—ସମ୍ଭ୍ରମ—ବ୍ୟଗ୍ର ଓ ଲୁବ୍ଧ ହୋଇ । ତୃଷ୍ଣାତୁଷିତ ଚାତକ—ମନହେଲା ପିପାସାତୁର ଚାତକ ପକ୍ଷୀ । ନବୀନଘନଜୀବନ—ନୂତନ ମେଘ

ଜଳ । ଭବ୍ୟ ଶାଳଅନ୍ନ—ଅତ୍ୟୁଜ୍ଜ୍ୱଳ ଶ୍ୱେତ ତଣ୍ଡୁଳ (ବାଙ୍ଗାଳୀ କେତେକ ଶାଳୀଧାନ୍ୟ କହନ୍ତି) । ଦାବ—ବନାଗ୍ନି । ଘନଆସାର—ଜଳଧାର (ପ୍ରଚୁର ଜଳ) । ରଥାଙ୍ଗ ଯୁଗ—ଚକ୍ରବାକ ମିଥୁନ—ରାମଙ୍କ ଅଭିଶାପରୁ ତାଙ୍କର ବିଚ୍ଛେଦ ହୁଏ । ଅଧିକାର ପାଶ—ଅଭିବାହିତା କନ୍ୟାର ଭାବୀ ସ୍ୱାମୀ । ବିକଚ ନୀପ—ପ୍ରସ୍ଫୁଟିତ କଦମ୍ବ ।

—0—

## ଜଗମୋହନ ଛାନ୍ଦ—ଦୀନକୃଷ୍ଣ ଦାସ

ଦୀନକୃଷ୍ଣ ଦାସ ଦିବ୍ୟସିଂହ ଦେବଙ୍କ (୧୬୮୭—୧୭୧୩) ସମକାଳୀନ । ସେ ଜାତିରେ ରାଜୁ । ତାଙ୍କ ପିତାଙ୍କ ନାମ ମଧୁସୂଦନ । ସେ ସ୍ୱକୃତ ରସ-ବିନୋଦରେ ଲେଖିଛନ୍ତି "ସୁବର୍ଣ୍ଣରେଖା ନଦୀତୀର, କଟକ ନାମ ଜଳେଶ୍ୱର । ...ତଣିଆ ରାଜ୍ୟର କଟକେ, ଗୋଳ ଚଉର ଦଣ୍ଡପାଟେ । ଆଠ ଯେ ଦଣ୍ଡପାଟ ମୂଳେ, ସୁବର୍ଣ୍ଣରେଖା ନଦୀ କୂଳେ । ସମସ୍ତେ ଅଛନ୍ତି ଯେ ପୂର୍ବ, ମୋତେ ଆଣିଲେ ଦେବହରି" ଇତ୍ୟାଦି । ସେହିଁ କିଛିକାଳ ଢେଙ୍କାନାଳରେ ଏକ-ଘରିଆରେ ରହି ପରେ ପୁରୀରେ ବାସ କଲେ । ଦିବ୍ୟସିଂହ ଦେବଙ୍କ ପ୍ରଶସ୍ତି ଗାନ ନ କରିବାରୁ ସେ ପୁରୀଧାମରୁ ବିତାଡ଼ିତ ହୋଇଥିଲେ । ନାନା ଶାସ୍ତ୍ରଜ୍ଞ ଥିବା ହେତୁ ସେ ନାନା ବିଷୟରେ ଗ୍ରନ୍ଥମାନ ଲେଖିଅଛନ୍ତି । ତନ୍ମଧ୍ୟରେ ନାମରତ୍ନ-ଗୀତା, ରସବିନୋଦ, ଗୁଣସାଗର, ଜଗମୋହନ ଛାନ୍ଦ, ଅମୃତସାଗର ବୋଲି, ନାରକେଳି, ରସକଲ୍ଲୋଳ, ଆର୍ତ୍ତତ୍ରାଣ ଚୌତିଶା ଉଲ୍ଲେଖ୍ୟ । ସେ ସାମୁଦ୍ରିକ, ଆୟୁର୍ବେଦ ଓ ସଙ୍ଗୀତାଦିରେ ଉତ୍ତମ ଅଧିକାରୀ ଥିବା ଜଣା ପଡ଼େ । ସେ ଯେପରି ଜ୍ଞାନୀ ସେପରି ଭକ୍ତ ଥିଲେ । ସେ ଜଗନ୍ନାଥଙ୍କ ଭକ୍ତର ଉପାସକ ଥିଲେ । ତାଙ୍କ କାନ୍ତ କୋମଳ ପଦାବଳୀ ଅନନୁକରଣୀୟ । ସେ ଉତ୍କଳରେ ସର୍ବତ୍ର ପରିଚିତ ।

**ଟୀକା:**—ମେଘପୁଷ୍ପ—ଜଳ । ଇନ୍ଦ୍ରଗୋପ—ସାଧବଘରବୋହୂ ପୋକ । ଚାମରଫୁଲ—ଗୁଆ, ନଡ଼ିଆ, କାଶ, କେତକୀ ଆଦି ଚାମର ପୁଷ୍ପରୂପେ କଥିତ (ଚାମର ସଦୃଶ ପୁଷ୍ପଗୁଚ୍ଛ ଯାହାର) । ଶଲ—ଛେଲି, ଶୈଳ । ଭାଲ—ଭଲ୍ଲ ।

ଫୁଲ ବାଣିଷ ଭ୍ରମର—କନ୍ଦର୍ପର ଚାମର। ଫୁଲ୍ଲାରବିନ୍ଦମୁଖ—ପ୍ରଫୁଲ୍ଲ ପଦ୍ମ ସଦୃଶ ମୁଖ ଯେଉଁ ସ୍ତ୍ରୀର। କନ୍ଦର୍ପର ଭଲ୍ଲ—କାମଦେବର ଭଲ୍ଲ—Juvelin। କୃପୀଟ—ଜଳ। ଲଗଣ—ନୌକାର ଉପରିଭାଗ ବିଶେଷତଃ ମଙ୍ଗ ପାଖ। କମଳମର୍ଦ୍ଦି—ଜଳମଗ୍ନ। କମଳପନ୍ତି—ପଦ୍ମ ସମୂହ। ଧୂର ପଡ଼ଇ—ଅଳ୍ପ ଦେଖାଯାଏ। କୁଟଜ—ଟିରମଲ୍ଲି କୋଡ଼େଇ ଫୁଲ। ଭୃଙ୍ଗକଦମ୍ବେ—ଭ୍ରମର ସଙ୍ଘ। ଛଳ—ଚତୁରତାରେ, କୌଶଳରେ। ପ୍ରଧାନ ରସ—ଶୃଙ୍ଗାର ରସ। ଭଳ—ବହଳ। ଉତ୍ତୁବନ୍ତ ନାବଳ—ପୁଷ୍ପମାନଙ୍କର ନାମସମୂହ। ଦେବା-ନରେନ୍ଦ୍ର—ଦେବଶ୍ରେଷ୍ଠ ଜଗନ୍ନାଥ। ମହାକରୁଣାଙ୍କର ପାରୀନ୍ଦ୍ର—ଅତୀବ ଦୟାଳୁ ଶ୍ରେଷ୍ଠ ( ପାରୀନ୍ଦ୍ର—ସିଂହ ଶ୍ରେଷ୍ଠତ୍ୱ ବାଚକ )। ଆରତ ଅଘ ଅନ୍ଧାର ଚନ୍ଦ୍ର—ଦୁଃଖୀ ଲୋକର ପାପରୂପ ଅନ୍ଧକାରକୁ ଦୂର କରିବାରେ ଚନ୍ଦ୍ରରୂପ। ମେଘା—ମେଘ ତୁଲ୍ୟ ଗମ୍ଭୀର ଶବ୍ଦକାରୀ ଢକ୍କା। ଠମକ—ଢେଙ୍ଗୁରା। ଚମକ ଓ ଦମକ—ବିସ୍ମୟ ଓ ଭୟ ଉତ୍ପାଦକ।

---

## ପ୍ରେମ ପଞ୍ଚାମୃତ—ଭୂପତି ପଣ୍ଡିତ

ଭୂପତି ପଣ୍ଡିତ ଜଣେ ପଶ୍ଚିମାଞ୍ଚଳବାସୀ ସାରସ୍ୱତ ବ୍ରାହ୍ମଣ। ସେ ତୀର୍ଥ ଯାତ୍ରା ପ୍ରସଙ୍ଗରେ ପୁରୀଧାମକୁ ଆସି ଉତ୍କଳୀୟ ବୈଷ୍ଣବ ଚୈତନ୍ୟ ଦାସଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ। ସେ ପଶ୍ଚିମା ଭାଷା, ବଙ୍ଗଳା ଭାଷା, ସଂସ୍କୃତ ଭାଷା, ହିନ୍ଦୀ ଭାଷାଦିରେ ଅଭିଜ୍ଞ ଥାଇ ଉତ୍କଳ ଭାଷା ଶିକ୍ଷା କଲେ ଓ ସ୍ୱଗୁରୁଙ୍କ ଆଦେଶରେ ଚୌତିଶା, ଚୌପଦୀ, ପ୍ରେମପଞ୍ଚାମୃତାଦି ରଚନା କଲେ। ତାଙ୍କ ଭାଷା ସହଜ, ସରଳ ଓ ହୃଦୟଗ୍ରାହୀ। ଭାଗବତର ରାସପଞ୍ଚାଧ୍ୟାୟୀ ଅବଲମ୍ବନରେ ପ୍ରେମପଞ୍ଚାମୃତ ଲିଖିତ। ତାଙ୍କର ଧର୍ମଶାସ୍ତ୍ର ଜ୍ଞାନ ଅଗାଧ ଥିଲା ବିଶେଷତଃ ଭାଗବତରେ ତାଙ୍କର ବ୍ୟୁତ୍ପତ୍ତି ଅସାଧାରଣ। ସେ ଦିବ୍ୟସିଂହ ଦେବଙ୍କ ଦ୍ୱାରା ଆଦୃତ ଓ ସମ୍ମାନିତ ହୋଇଥିଲେ। ସେ ଉପେନ୍ଦ୍ର ଭଞ୍ଜଙ୍କ ସମକାଳୀନ।

ଟୀକା: —ସେହି ନାମ ଶବ୍ଦ—ଅନାହତ ଧ୍ୱନିରୂପେ ଥାଏ । ଶବଦ...ଧାମ—ସେ ଅନାହତ ଧ୍ୱନି, ଅବ୍ୟକ୍ତ ନାଦ, ପ୍ରଭୁଙ୍କର ନିଜଗୃହ । ଠୂଳ—ଅର୍ଦ୍ଧ ମାତ୍ରା । ଜ୍ୟୋତିର୍ମୟ ସ୍ଥାନ—ଶୂନ୍ୟ ଓ ପ୍ରପଞ୍ଚର ମଧ୍ୟବର୍ତ୍ତୀ ସ୍ଥାନ ଓ ଅବସ୍ଥା । ଶୂନ୍ୟ—ମହାକାଶ, ବ୍ରହ୍ମଙ୍କ ଅଧିଷ୍ଠାନ । ସର୍ବତ୍ର ସମାନ ସମ୍ପୂର୍ଣ୍ଣେ—ସେ ସବୁଠାରେ ସମାନ ଭାବରେ ପୂର୍ଣ୍ଣ ହୋଇଅଛନ୍ତି କିନ୍ତୁ ଉପାଧି (ନାମ) ମାତ୍ରରେ ଭେଦ । ବର୍ଣ୍ଣରେ...ନାମମୟି—ନାମରୁ କି ଶବ୍ଦରୁ ବର୍ଣ୍ଣ ଜାତ ହୁଏ ତେବେ ନାମ ବର୍ଣ୍ଣରୁ ପୃଥକ୍ କିନ୍ତୁ ବର୍ଣ୍ଣମାନେ ନାମମୟ କାରଣ ନାମ ବା ଶବ୍ଦ ମୂଳ ତହିଁ ବର୍ଣ୍ଣମାନଙ୍କ ଜନ୍ମ ।

ଯେସନ...ସ୍ଥାନ—ପ୍ରାଣ ସମସ୍ତ ଦେହରେ ବ୍ୟାପି ରହିଛି କିନ୍ତୁ କୌଣସି ଅଂଶକୁ ପ୍ରାଣର ସ୍ଥାନ କୁହାଯାଇ ନ ପାରେ । ସେହିପରି ସେ ସର୍ବତ୍ର ବ୍ୟାପି ଅଛି ତାର ସ୍ଥାନ ନିର୍ଦ୍ଦେଶ କରିବା ଅସମ୍ଭବ ।

ସକଳ ରୂପ...ତତ୍ତ୍ୱ—ନାମଟି ହିଁ ତତ୍ତ୍ୱ, ନାମଟି ହିଁ ସତ୍ୟ, ନାମଟି ଲୀଳା କରତା, ନାମଟି ହିଁ ଯୋଗ ଭୋଗ କରୁ ଥାଇ, ନାମଟି ସବୁ ହରନ୍ତା । ନାମକୁ ପାଇଲେ ରୂପ ଲୋଡ଼ା ନାହିଁ ସର୍ବରୂପ ଯହିଁ ମୂଳ (ଅଣାକାରଧରିତା—ଅଚ୍ୟୁତ) ଅଥୟ—ସର୍ବତ୍ର ବ୍ୟାପି ଥିବାରୁ କୌଣସି ଏକ ସ୍ଥାନରେ ରହି ନ ଥାଏ । ଅଠର ପୁରି—ଅଠର ପୁରାଣ; ବ୍ରହ୍ମ, ବିଷ୍ଣୁ, ପଦ୍ମ, ସ୍କନ୍ଦ, ଭାଗବତାଦି । ଷଡ ବୁଦ୍ଧି—ଷଡ୍ ଦର୍ଶନ—ସାଂଖ୍ୟ, ଯୋଗ, ବୈଶେଷିକ, ନ୍ୟାୟ, ମୀମାଂସା ଓ ବେଦାନ୍ତ, ବଂଶ—ହରିବଂଶାଦି । ସଚ୍ଚିଦାନନ୍ଦ—ଭଗବାନ୍ ସତ୍ତ୍ୱମୟ, ଜ୍ଞାନମୟ ଓ ଆନନ୍ଦମୟ । ମାତା—ସ୍ୱରବେଦ । ସୁର ନର ନାଗ ଭାଷା—ସଂସ୍କୃତ, ପ୍ରାକୃତ ଓ ପୈଶାଚୀ । ଭକ୍ତ ବିଭେଦ—ଭକ୍ତ ନିର୍ଣ୍ଣୟକାରୀ ସଯୋଗେ—ଭଲ ଯୋଗରେ । ତ୍ରିଗୁଣ—ସତ୍ତ୍ୱ, ରଜ ଓ ତମ—ମାୟା, ପ୍ରକୃତି । ନିଗମ ବାଞ୍ଛାବୃକ୍ଷ ଫଳ—ବେଦ ହେଲା ବାଞ୍ଛାବୃକ୍ଷ ତାର ଫଳ ହେଉଛି ଭାଗବତ "ନିଗମ କଳ୍ପ ତରୋର୍ଗଳିତଂ ଫଳଂ" ଭାଗବତ । ବେଦମତ—ବେଦାନୁମୋଦିତ ଧର୍ମ । ଘୁହାଇ...ନୋହେ—ସ୍ଥିର ହୋଇ ବିଚାର କରନ୍ତୁ ।

ସର୍ବ କୃପଣ......ଦୁଃଖଦାନେ—ପରକୁ ଦୁଃଖ ଦେବାରେ ପଣ୍ଡିତ କିନ୍ତୁ ଦାନରେ ମୁକ୍ତହସ୍ତ ।

ନର୍ଦ୍ଦୟୀ.....ନାଶନେ—ଲୋକଙ୍କ ମନ୍ଦଦଶା ନାଶ କରିବାରେ ପ୍ରଚଣ୍ଡ ଅର୍ଥାତ୍ ସୁଦଶା ଦେବାରେ ତତ୍ପର ।

ସୁରୁପେ......ତୁଳସୀ—ପରସ୍ତ୍ରୀରେ ରମିବା ମହାପାପ, କିନ୍ତୁ ତୁଳସୀଦେବୀ ଯେ ପରର ସ୍ତ୍ରୀ (ଭଗବାନଙ୍କର ପ୍ରିୟା), ତାଙ୍କୁ ଭକ୍ତି ଭାବରେ ଲୋକେ ସେବା କରନ୍ତି । ପର......ସେବନେ—ନାରୀର ପରପୁରୁଷ ସେବା ମହାପାପ—ଏ ଦେଶରେ ତାହା ନାହିଁ । କିନ୍ତୁ ପର—ଉତ୍କୃଷ୍ଟ ପୁରୁଷ—ମହାଦେବଙ୍କୁ ଭକ୍ତିଭରେ ସ୍ତ୍ରୀମାନେ ପୂଜନ୍ତି ।

କେବଳ...ବାଦ—ଧନ ସମ୍ପର୍କ ବାଦବିସମ୍ବାଦ ନାହିଁ କିନ୍ତୁ ବିଦ୍ୟାରେ ତର୍କ ଓ ବିଚାର । କେବଳ...ମଦ—ଲୋକଙ୍କଠାରେ ଅହଂକାର ନାହିଁ, କେବଳ ହସ୍ତିର କପୋଳରେ ମଦବାରି ଥାଏ । ଅଶ୍ୱ...ଗତି—ଲୋକଙ୍କଠାରେ ଗର୍ବ ନାହିଁ—ଅଶ୍ୱର ଗ୍ରୀବା ଉନ୍ନତ । କୁଟିଳ......ଥାନ୍ତି—ଲୋକେ କପଟୀ ନୁହନ୍ତି—ତାଙ୍କ କେଶ କୁଞ୍ଚିକୁଞ୍ଚିଆ । ପୁନ......ଗାଳି—ସେ ଦେଶରେ ଗାଳି ନାହିଁ କେବଳ ଶଳା ଗାଳି ହଏ । ଦୁର୍ଲଭ......ବ୍ୟାଧିକ—ସେଠାରେ ଦରିଦ୍ର ଓ ରୁଗ୍ଣ ନାହାନ୍ତି । କେବଳ......କଳଙ୍କ—ସେ ରାଜ୍ୟରେ ବଦନାମି ନାହିଁ କେବଳ ଚନ୍ଦ୍ରଙ୍କଠାରେ କଳଙ୍କ ଦେଖାଯାଏ । ଲଙ୍ଘନ...ବନେ—ସେଠାରେ ଧର୍ମ ମର୍ଯ୍ୟାଦା କେହି ଛାଡନ୍ତି ନାହିଁ—ଏକାଦଶୀରେ ଉପବାସ କରନ୍ତି । କେବଳ......ଗମନ—ସେଠାରେ ଅସହାୟ କେହି ନାହିଁ—ତୀର୍ଥ ଯାଆନ୍ତି ଏକୁଟିଆ ହୋଇ (ଏହା ଧର୍ମାନୁମୋଦିତ) । ସ୍ୱଦାର...କାମ—ଲୋକେ କାମାସକ୍ତ ନୁହନ୍ତି କିନ୍ତୁ ଋତୁକାଳରେ ସ୍ତ୍ରୀ ସଙ୍ଗମ କରନ୍ତି "ଋତୁକାଳାଭିଗାମୀସ୍ୟାତ୍ ସ୍ୱଦାର ନିରତଃ ସଦା" । ବଦନ......ଶଶାଙ୍କ—ଗଣେଶ ଚତୁର୍ଥୀରେ ଚନ୍ଦ୍ର ଦର୍ଶନ ମନା ସେହିପରି କେହି ପରସ୍ତ୍ରୀ ମୁଖ ପ୍ରତି କାମଦୃଷ୍ଟିପାତ କରନ୍ତି ନାହିଁ ।

---

## ପ୍ରେମସୁଧାନିଧି—ଉପେନ୍ଦ୍ର ଭଞ୍ଜ

ସେ ଓଡ଼ିଆ ସାହିତ୍ୟରେ କବି-ସମ୍ରାଟ୍ । ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କ ପୌତ୍ର ଓ ନୀଳକଣ୍ଠ ଭଞ୍ଜଙ୍କ ପୁତ୍ର । ସମ୍ଭବତଃ ସେ ୧୬୭୦ ଖ୍ରୀଷ୍ଟାବ୍ଦରେ ଜାତ

ହୋଇ ୧୭୨୦ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିଥିଲେ । ସେ ଉପଯୁକ୍ତ କବି ସମ୍ପ୍ରଦାୟର ଦାୟାଦ ଥାଇ ଏକାଧାରରେ ଯୁଗସୃଷ୍ଟ ଓ ଯୁଗସ୍ରଷ୍ଟା କବି ହୋଇଥିଲେ । ସେ ଯେପରି ପ୍ରତିଭାବାନ୍ ସେପରି ଶାସ୍ତ୍ରଜ୍ଞ ଥିଲେ । ସେ ରାମତାରକ ମନ୍ତ୍ର ସିଦ୍ଧି କରିଥିବାରୁ ଓ ଦେବୀ କାଳୀଙ୍କ ଅନୁଗ୍ରହ ଲାଭ କରିଥିବାରୁ ଅଦ୍ଭୁତ ଶାବ୍ଦିକ, ଅଳଙ୍କାରିକ ତଥା କବି ହୋଇ ପାରିଥିଲେ । କାବ୍ୟର ସମସ୍ତ ବିଭବ ତାଙ୍କ କାବ୍ୟରାଜିରେ ସନ୍ନିହିତ । ତାଙ୍କର ଆଳଙ୍କାରିକ କୃତିତ୍ୱ ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ ଦୁର୍ଲଭ । ସେ ୪୨ ଖଣ୍ଡ କାବ୍ୟ କବିତାଦି ଲେଖି ଅଛନ୍ତି । ତାଙ୍କ କାବ୍ୟମାନଙ୍କ ମଧ୍ୟରେ ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, କଳାକଉତୁକ, ଅବନା ରସ ତରଙ୍ଗ, ଛାନ୍ଦକାବ୍ୟ ରସିକ ହାରାବଳୀ ଇତ୍ୟାଦି ଶ୍ରେଷ୍ଠ । ପଦ୍ଦକରେ କହିଲେ ସେ ଦେବୀ ବୀଣାପାଣିଙ୍କ ବରପୁତ୍ର ।

**ଟୀକା:**—ଦର୍ପକ—କାମଦେବ । ଦର୍ପଣ—ଧାତୁ ଦ୍ରବ୍ୟ ୧ ସିନ୍ଦି—ଚୂନ ସା ପ୍ରସ୍ତୁତ କର—ତାକୁ ମାଜି ପାଲିସ କରି ଉଜ୍ଜ୍ୱଳ କଲେ ମୁଖ ଦେଖନ୍ତି । ପ୍ରୀତି କଉଶଳା—ପ୍ରୀତିକୁଶଳା । କୋୟୂର—କିଙ୍କର, ଚାକର । ଉରଜ—ଉରୋଜ, ସ୍ତନ । ଜମ୍ବାଳ—ପଙ୍କ, କାଦୁଅ । ଉପଗୃର—୧ ଉପକାରର ପଦାର୍ଥ । ମଙ୍ଗଳ—ଶୁଭ, ମଙ୍ଗଳ ଗ୍ରହ କେବଳ ଅମଙ୍ଗଳକାରକ ହେତୁ ଏପରି ଉକ୍ତ ।

---

## ବ୍ରଜବିହାର (କୃଷ୍ଣଙ୍କ ବାଲ୍ୟଲୀଳା)—ଦାଶରଥି ଦାସ

କବି ବର୍ଣ୍ଣରେ କରଣ । ବାସସ୍ଥାନ ରଣପୁର ରାଜ୍ୟ । ସେ ଶୁଦ୍ଧା ଭକ୍ତି ମାର୍ଗର ଉପାସକ । ବ୍ରଜବିହାର କାବ୍ୟର ଲେଖାସମାପ୍ତି କାଳ ୧୭୩୧ ଖ୍ରୀଷ୍ଟାବ୍ଦ । ଏ କାବ୍ୟ ଦଶ ଗୋଟି ବୋଲି ବା ଭାଗରେ ବିଭକ୍ତ । କୃଷ୍ଣଙ୍କ ବ୍ରଜଲୀଳା ଅତି ସୁନ୍ଦର ଓ ବିସ୍ତୃତଭାବରେ ବର୍ଣ୍ଣିତ । ଭାଷା ଶୁଦ୍ଧ, ସଂସ୍କୃତାନୁକୂଳ ଓ ସରଳ ।

**ଟୀକା:**—ଗୁଡ଼ୁଗୁଞ୍ଚା (ଗୁଡ଼ୁଗୁଚ୍ଛ, ଗୁଡ଼ୁଗୁଞ୍ଚା)—ଶିଶୁଙ୍କର ପେଟେଇ ଚାଲିବା—ଏହି ପଦ ଜଗନ୍ନାଥ ଦାସଙ୍କ ଭାଗବତର ପଦାନୁରୂପ:—ଚାଲନ୍ତି ଅଟେ ଗୁଡ଼ୁଗୁଞ୍ଚା, କ୍ଷଣ କ୍ଷଣକେ ପଛଗୁଞ୍ଚା—୧୦ମ ସ୍କନ୍ଧ । ବେଣୀ—ବିନ୍ୟସ୍ତ କେଶପାଶ । ଅଳକା

— ଚୂର୍ଣ୍ଣକୁନ୍ତଳ । ଏ ସବୁ ଭଅଁର ଚ୍ଛ୍ୟା—ମୁଖ ହେଲା ପଦ୍ମ । ହେମଗୁଣାଂଗୁନ୍ଥା ପ୍ରବାଳ—ସୁନା ସୂତାରେ ଗୁନ୍ଥାହେବା ପୋହଳା । ବାହୁଟି—ବାଜୁବନ୍ଧ । ବିତପନ—ଦୀପ୍ତ, ଶୋଭାଯୁକ୍ତ । ଆଣ୍ଠୁଆଡ଼—ଭୂମିରେ ଆଣ୍ଠୁ ଭର ଦେଇ । ଅମା ଅମ୍ବା—ଶିଶୁମୁଖରୁ ଉଚ୍ଚାରିତ 'ମ' ଶବ୍ଦ । ହେମା—ହମ୍ବା—ଅମ୍ବା—ହେ 'ମା' ବୋଲି ଡାକ । ଗାଳେ—ମୁଖରୁ ବାହାରେ, ଡାକେ । ନିରେଖି—ଦେଖି । ନପିଆଇ—ଝୁରଇ । ଧାଇଶୀଆ—ପୁତନା ପରାଣ ନିଆ । ବିକାର ଲେଉଟିଲେ —ମନରୁ ସାଂସାରିକ ବିକାର ଛାଡ଼ିଲେ । ଅନୁରାଗ ଭାବେ ଲେଉଟିଲେ—(ଲେଉଟି ବ୍ୟାପିବା—ଲେଉଟିବା) ଶରୀର କୃଷ୍ଣ ଅନୁରାଗରେ ଭରପୂର ହୋଇଗଲା । ଶିଖିନ (ଶିଖୀନ୍)—ମୟୂର । ଚଉପାହେ—ଚାରିଗୋଡ଼ରେ ଅର୍ଥାତ୍ ଦୁଇ ଗୋଡ଼ ଓ ଦୁଇ ହାତରେ ଭର ଦେଇ ଗୁରୁଣ୍ଡି ଚାଲିବା । ଫୁଟିବ—ଥକି ପଡ଼ିବ, କ୍ଳାନ୍ତ ହେବ । ପଲ୍ଲଶି (ପ୍ର+ଲସ ବା ପରି+ଅସ୍ ଧାତୁଜ)—ଝୁଲିଝୁଲି ଦଉଡ଼ିବା । ସାଜୋଇ—ସଜ୍ଜିତ ହୋଇ । କସ୍ତୁରୀ (ଯେ ମୃଗର ନାଭିରେ କସ୍ତୁରୀ ଥାଏ) ମୃଗ । ନିଧନ ଧନଆ—ଦରିଦ୍ରର ଧନ । ସୁନଆ—ସୁନା । ବାହୁନାଇ—ବର୍ଣ୍ଣନା କରି ।

---

## ବ୍ରଜବିହାର—କୃପାସିନ୍ଧୁ ଦାସ

ସେ ସ୍ୱପ୍ରଣୀତ ବ୍ରଜବିହାର କାବ୍ୟରେ ଲେଖିଛନ୍ତି କି ସେ ଖରସୋଧା କରଣ ଓ ତାଙ୍କ ନିବାସ କଟକ ଜିଲ୍ଲା ଅନ୍ତର୍ଗତ ଡାଳିଯୋଡ଼ା କିଲ୍ଲା । ସେ ଶୁଦ୍ଧ ଭକ୍ତିମାର୍ଗର ଉପାସକ । ୧୭୪୭ ଖ୍ରୀଷ୍ଟାବ୍ଦରେ ବ୍ରଜବିହାର କାବ୍ୟ ସମାପ୍ତ ହୋଇଥିଲା । ଏ କାବ୍ୟ ୨୧ ଛାନ୍ଦରେ ବିଭକ୍ତ । ଭାଷା ସହଜ, ସରଳ ଓ ମଧୁର । ସପ୍ତମ ଛାନ୍ଦଟି ଅତି ମନୋହର—ଏ ଅଂଶ ତହିଁରୁ ଉଦ୍ଧୃତ ।

ଟୀକା:—ସୁମନ—ଫୁଲ । ଅହିବାରେ—ସର୍ପସମୂହ । ସୁଧାଅଶନ—ଅମୃତ ଭୋଜନ, ସୁସ୍ୱାଦୁ ଖାଦ୍ୟ । ଆଡ଼ିଲାନ (ଅରେଇଲାଣି, ଆରିଲାଣି । ର, ଡ଼ ଓ ଳ ବର୍ଣ୍ଣମାନଙ୍କର ଅଭେଦ)—ଅଡ଼ୁକୁ ମୁହେଇଲାଣି, ଅଙ୍କୁରିଲାଣି । ତାପ—ଦୁଃଖ । ବିଧୁର—ବିକଳ (ଚନ୍ଦ୍ରାକରିବାକୁ ଲାଗିଲାଣି) । ବା 'ବିଧୁର—ବନ୍ଧୁଙ୍କ

ବପସୃଷ୍ଟିର ଚିନ୍ତା କଲୁଣି — ପ୍ରଥମ ଅର୍ଥଟି ସମୀଚୀନ । ସାଙ୍କିଳନି — ସଜାଇଲାଣି । ସାୟକ — ଧନୁ । ବଟିଲ୍ଲନ — ଠକିଲାଣି । ଘନସାର — ଚନ୍ଦନ । ହସିଲେନ — ଉପଚାରମାନ ବ୍ୟର୍ଥ ହେବା ହେତୁ ମଦନ ଚେଷ୍ଟା ଜାଣିପାରି । ସୁଷମା — ଶୋଭା । ଶୋଭା କମିଯାଆନ୍ତେ ମଧ୍ୟ ଚମ୍ପା' କେତକୀର ବର୍ଣ୍ଣରେ ତିରସ୍କାର କଲେଣି । କାନ୍ତି କମି ଯାଆନ୍ତେ ସେମାନଙ୍କ ପାଖୁଡ଼ାର ବର୍ଣ୍ଣର ସମାନ ହେଲେଣି । ସୁନାକୁ କଷଟିରେ ଘଷିବାରେ ତାହା ଦେହ ସମାନ ଦିଶିଲା — ଏଥିରୁ ସ୍ପଷ୍ଟ ଜଣାଗଲା କାନ୍ତି କମିଯିବାରୁ ତାହା ଚମ୍ପା, କେତକୀ ଓ ସୁନାର ବର୍ଣ୍ଣ ଭଳି ହେଲା । ହାଟକବରୁଣୀ — ସ୍ୱର୍ଣ୍ଣବର୍ଣ୍ଣା । ନାଟକଶାଳିତରୁ — ଚମତ୍କାରିତାରୁ । ବାହାର — ଅଧିକ । କଟକ ଧ୍ୱନି — ବାଜାର ଶବ୍ଦ । ମଟକ — ଆଖିପଲକ । ଏପରି ଦେହ କ୍ଷୀଣ ହେଲା ଯେ ମୁଦି ହାତରେ ହାତ ପଶିଗଲା । ଛଳିଲା — ବୃଥା ହେଲା ବୋଲି କହିଲା । କଳିଲା — ଗ୍ରହଣ କଲା । ସ୍ଖଳିତ — କାଞ୍ଚିତ୍ ରହିତ । ତଳିତ — ତଳତଳ ଯୁକ୍ତ — ଚଞ୍ଚଳ । ଦଳିତ-କଜ୍ଜଳ-କୁନ୍ତଳା — ଦଳା କଜ୍ଜଳ ସଦୃଶ କେଶ ଯାହାର । ପାଦେ — ପରିଣାମରେ । ଫଳିତ — ଫଳଯୁକ୍ତ । ପଳିତ — ବୃଦ୍ଧ, ପରିଣତ । ଜଳିତ — ଧୂତ । ଦେହି — ନିଜ ଶରୀରକୁ (ଦେହ ଅର୍ଥରେ) ।

---

## ଯୁଗଳରସାମୃତ ଲହରୀ — ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା

ସେ ସାମବେଦୀ ବ୍ରାହ୍ମଣ । ନୟାଗଡ଼ ରାଜ୍ୟରେ ଜାତ ଓ ଶିକ୍ଷିତ ହୋଇ ଥିଲେ । ସେ ଜଣେ ଉଚ୍ଚ କୋଟିର ପଣ୍ଡିତ । ବିଶେଷତଃ ଭଞ୍ଜୀୟ ସାହିତ୍ୟ ଶୈଳୀରେ ପାରଦର୍ଶୀ ଥିଲେ । ସେ ଶ୍ରଦ୍ଧା ଭକ୍ତିର ଉପାସକ ଓ ପରମ ବୈଷ୍ଣବ ଥିଲେ । ସେ ଓଡ଼ିଶାର ଗଜପତି ରାଜା ବୀରକେଶରୀ ଦେବଙ୍କ ଦ୍ୱାରା କବିସୂର୍ଯ୍ୟ ଉପାଧିରେ ଭୂଷିତ ହୋଇଥିଲେ । ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ସେ ସାଧୁ ଚରଣ ଦାସ ନାମରେ ପରିଚିତ ହେଲେ । ସେ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଗୁରୁ । ସେ ଅନେକ ଗୁଡ଼ିଏ ବୈଷ୍ଣବ ଗ୍ରନ୍ଥ କାବ୍ୟାକାରରେ ଲେଖିଅଛନ୍ତି । ତାଙ୍କ କାବ୍ୟମାନଙ୍କ ମଧ୍ୟରେ ପ୍ରେମତରଙ୍ଗିଣୀ, ପ୍ରେମ କାହାଣୀ, ଲଳିତ ଲୋଚନା, ରୈବର ଚିନ୍ତାମଣି, ଯୁଗଳ ରସାମୃତ ଲହରୀ ଓ ଭଉଁରୀ, ବିଶ୍ୱମ୍ଭର

ବଳାସ ଓ ପ୍ରେମଚନ୍ଦ୍ରାମଣି ଶ୍ରେଷ୍ଠ । ସେ ଗୀତା ଓ କାମ ଶାସ୍ତ୍ରଗ୍ରନ୍ଥ, ଚଉତିଶା; ଚଉପଦୀ ମଧ୍ୟ ଲେଖି ଅଛନ୍ତି । ସେ ରୂପଗୋସ୍ୱାମୀଙ୍କ ପ୍ରାୟ ସମସ୍ତ ଗ୍ରନ୍ଥ ଓଡ଼ିଆ ପଦ୍ୟରେ ଲେଖି ଅଛନ୍ତି । ସଦାନନ୍ଦ ଓ ଅଭିମନ୍ୟୁଙ୍କ ବ୍ୟତୀତ ଅନ୍ୟ କୌଣସି କବି ଉପେନ୍ଦ୍ରଙ୍କ ତୁଲ୍ୟ ଶବ୍ଦାଳଙ୍କାରରେ ପାରଦର୍ଶୀ ହୋଇ ପାରି ନାହାନ୍ତି ।

**ଟୀକା:**—ଗୁମାନ—ଗର୍ବ । ରହେ—ଏକାନ୍ତରେ । ଛଳଲ୍ଲନ—ମଜ୍ଜିଲଣି, ଅଙ୍ଗୀକୃତ ଆଚ୍ଛନ୍ନ କଲଣି, ଯଥା—"ଛଳମନ ଭୃମ୍ଭ ଶୁଣେ, ଛ ବୁଦ୍ଧି ଦୁର୍ଗେଶ ଭଣେ; ଚମ୍ପୂ—ଛଗୀତ" । ଚୂନ୍ଦନ—ଚୂନା । ଢଳିଲ୍ଲନ—ଧରିଲଣି, ଘେନିଲଣି । କମ—କର୍ମ, କଳା । ଉଶୀର—ବେଣାଚେର । ନଖେ—ନଖରେ । ଶାଣିଲ୍ଲନ—ଶାଣଯୁକ୍ତ । କେଳଙ୍ଗ ନାହା—କାମଦେବ । ଓଜ—ବଳ । ଖୋଜିଲ୍ଲନ—ଉଡ଼ାଇ, ଭୃଙ୍ଗ ଚଳାଇ ଖୋଜିଲଣି । ସ୍ମରହର—ମହାଦେବ । ଫାନ୍ଦିଲ୍ଲନ—ନାନାକଥା କହିଲଣି । କୃଷ୍ଣଙ୍କ ରୂପସମ ମଣି ମେଘକୁ ଦେଖି କାନ୍ଦିଲ୍ଲ—ସେହିପରି ତମାଳକୁ ପୂଜିଲ୍ଲ ଓ ବାହୁଲତାରେ କୋଳ ଦେବା ଚେଷ୍ଟା କଲ୍ଲ । କ୍ଷୁବ୍ଧିଲ୍ଲନ...ଶୋକରେ—ହୃଦୟ ଦୁଃଖପୂର୍ଣ୍ଣ ହେଲ୍ଲ । ସନ୍ଧିଲ୍ଲନ—ଗଲ୍ଲ—ଦୂତୀ କୃଷ୍ଣଙ୍କ ପାଖକୁ ଗଲ୍ଲ୍ଲ ।

---

## କୃଷ୍ଣବିଳାସ (ବର୍ଷା ବର୍ଣ୍ଣନା)—ଚକ୍ରପାଣି ପଟ୍ଟନାୟକ

ଚକ୍ରପାଣି ପଟ୍ଟନାୟକ ଓଡ଼ିଶାର ଗଜପତି ବୀରକେଶରୀ ଦେବଙ୍କ ସମସାମୟିକ (୧୭୩୬-୧୭୭୯) । ସେ ଜଣେ ଅଦ୍ଭୁତ ପ୍ରତିଭାଶାଳୀ ପଣ୍ଡିତ ଓ କବି ଥିଲେ । ସଂସ୍କୃତ ସାହିତ୍ୟରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲା । ତତ୍କୃତ ସଂସ୍କୃତ ଗ୍ରନ୍ଥ ଚମ୍ପୂ ଗୋଟିଏ ଅମୂଲ୍ୟ ରତ୍ନ । ସେ ଜଣେ ଆଶୁକବି ଥିଲେ, ତହିଁ ସେ ଚକ୍ରବାକ୍ ଚକ୍ରପାଣି ନାମରେ ପ୍ରସିଦ୍ଧି ଲଭିଲେ । ତତ୍କୃତ କୃଷ୍ଣବିଳାସ ଓଡ଼ିଆ କାବ୍ୟରାଜ୍ୟରେ ଗୋଟିଏ ରତ୍ନ । ଏହା ୨୧ ଛାନ୍ଦରେ ସମ୍ପୂର୍ଣ୍ଣ । ତାଙ୍କ ଭାଷାରେ ସମତା, ସରଳତା, ଶୁଦ୍ଧତା ଓ ମାଧୁରୀ ଯୁଗପତ୍ ବିଳାସ କରୁଅଛି । ବର୍ଷା ଋତୁର ବର୍ଣ୍ଣନାର ଉଦ୍ଧୃତାଂଶରୁ ତାର ଆଭାସ ମିଳେ ।

ଟୀକା:—ଚକ୍ଷୁଳକୁ କତ—ଜକ୍ଷୁଳକୁ ଜଣିବା କଲା ମେଘ । କଳୁଭ —ଭଗ । ଦାମିନୀ—ବିଜୁଳି । ··କଦାଘ···ବକମାଳୀ—କଦାଘ ଖଗବନ ହେଲା ହସ୍ତୀ ତାର ମସ୍ତକ ଉପର ଗଜ ସମୟ—ବର୍ଷାକାଳ ହେଲା ହରି—ସିଂହ । ଗିରିବର ଶୃଙ୍ଗେ—ପର୍ବତ ଶିଖରରେ ରହ୍ଥ, ମେଘର ଗଡ଼ଗଡ଼ ହେଲା ସିଂହର ଗର୍ଜନ ବିଜୁଳି ହେଲା ସିଂହର ରସନା—ଜିହ୍ୱା । ବକମାଳୀ—ମେଘ ସଙ୍ଗରେ ବକମାନେ ଥାନ୍ତି । ସିଂହର ଦଶନପନ୍ତି—ଦାନ୍ତସବୁ । ସୁନାସୀର···ଆଖଣ୍ଡେ—ଇନ୍ଦ୍ରଧନୁ ଆକାଶରେ ପ୍ରକାଶ ପାଇଲା । ଶିଖୀ—ମୟୂର ମନ ଖୁସିରେ, ଶିଖରୀଶିଖରେ—ବୃକ୍ଷର ଅଗ୍ରଭାଗରେ, ନାରୀବୃନ୍ଦ—ମୟୂରୀମାନଙ୍କ ପାଖରେ ନାଚିଲା । ଜାତବେଦ—ଅଗ୍ନି । ସେହି···ହେଲେ—ବିଦେଶୀ-ବିରହୀ ନାୟକ ବୀପରୀତ-ବିରହ ଦୁଃଖରୁ ଦୁର୍ବଳତା ହେତୁ ଗତି ମନ୍ଦ କଲେ । ତହୁଁ ପଡ଼ିବା ହତେ—ପଡ଼ିବା ଭୟରେ (ହୀତ—ହ୍ରୀ+କ୍ତ ପ୍ରତ୍ୟୟ ଭାବେ) ଶଙ୍କିଲେ—ଶଙ୍କା କଲେ । ଇନ୍ଦ୍ରଗୋପ—ସାଧବଘର ବୋହୂ ପୋକ । ମଲ୍ଲୀବଲ୍ଲୀ —ମଲ୍ଲୀ ଲତା । ଭ୍ରସଳ—ଭ୍ରମର । ଅନଶରେ—ସର୍ବଦା । ଦୁର୍ଦ୍ଦିନ —ଘୋର ବର୍ଷାକାଳ । ଶର୍ବରୀ—ରାତ୍ରି । ରଯ଼ୁଣୀ—ରାତ୍ରି । ଚକ୍ରବାକ ଓ ଚକ୍ରବାକୀଙ୍କର ରାତ୍ରିରେ ବିଚ୍ଛେଦ ରାମଙ୍କ ଅଭିଶାପରୁ । ପାଣିଜ···—ପଦ୍ମ । ବିଜୟ କୁସୁମ—ଅର୍ଜ୍ଜୁନ ଗଛର ଫୁଲ (ଅର୍ଜ୍ଜୁନଙ୍କର ନାମବିଶେଷ ତହୁଁ ଲକ୍ଷଣାରେ ଅର୍ଜ୍ଜୁନ ଗଛ ବୁଝାଇଲା) । ଚତୁରମାସ—ସାଧୁମାନେ ବର୍ଷାକାଳ ଚାରିମାସ ଗୋଟିଏ ସ୍ଥାନରେ ରହନ୍ତି ତାହାକୁ ଚାତୁର୍ମାସ୍ୟ ବ୍ରତ କୁହାଯାଏ ।

## ସଖୀଭକ୍ତ ଓ ସଖୀ ଶିକ୍ଷା

## ( ନବାନୁରାଗ ) ବନମାଳୀ ପଟ୍ଟନାୟକ

ଉତ୍କଳ ଗଜପତି ବୀରକେଶରୀ ଦେବଙ୍କ ସମସାମୟିକ । ସେ ଅନେକ ସରଳ ସୁନ୍ଦର ମଧୁର ଚୌପଦୀ ସଙ୍ଗୀତର କବି । ସେ ବୀରକେଶରୀ ଦେବଙ୍କ ନାମରେ ୨୧ ଗୋଟି ଚୌପଦୀ ଗୀତ ରଚନା କରି ଅଛନ୍ତି । ତାଙ୍କ

ସଙ୍ଗୀତମାନ ଅତୀବ ଲୋକପ୍ରିୟ । ଉପଯୁକ୍ତ ରୂପେ ଗୀତ ହେଲେ ତାଙ୍କ ସଙ୍ଗୀତ ସବୁ ଲୋକଙ୍କୁ ମୁଗ୍ଧ ଓ ଆନନ୍ଦରେ ମଗ୍ନ କରିଦିଏ ।

**ଟୀକା:**—ହୁରଜୁର—ମାର୍‌ପିଟ ଲୁଟ କରିବା । ଆକଟ—ତାଗିଦ, ନିଷେଧ । ଲୁଚ୍‌ନିଆ—ଲୁଣ୍ଠ । ନଦର—ଦୃଷ୍ଟି (ଅ: 'ନଜର) । କଦର—ଉପାୟ ।

---

## ନୃସିଂହ ପୁରାଣ (ନୃସିଂହାବତାର ଓ ହିରଣ୍ୟ କଶିପୁବଧ)

### ପୀତାମ୍ବର ଦାସ

ପୀତାମ୍ବର ଦାସ ଗଞ୍ଜାମ ଜିଲ୍ଲାରେ ରଘିକୁଲ୍ୟା ତଟବାସୀ କାଣ୍ଵଶାଖାନ୍ତର୍ଗତ କୌଣ୍ଡିନ୍ୟସ ଗୋତ୍ରର ବ୍ରାହ୍ମଣ ଲକ୍ଷ୍ମୀଧର ଦାସଙ୍କ ପୌତ୍ର ଓ ବାଲୁଙ୍କେଶ୍ଵର ଦାସଙ୍କ ପୁତ୍ର ଥିଲେ । ସେ ବଡ଼ ଦରିଦ୍ର ଥିଲେ । ସେ ୧୬୩୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ତାଙ୍କ ବତିଶ ବର୍ଷ ବୟସରେ ଅର୍ଥାତ୍ ୧୬୬୯ ସାଲରେ ଦେବୀ ସାରଦାଙ୍କ ସ୍ୱପ୍ନାଦେଶରେ ନୃସିଂହ ପୁରାଣ ଲେଖା ଆରମ୍ଭ କଲେ । ସେ ଦରିଦ୍ରତା ହେତୁ ଭିକ୍ଷାଟନ ମଧ୍ୟ କରିଥିଲେ । ନୃସିଂହ ପୁରାଣ ସପ୍ତ ରତ୍ନାକର ବା ଭାଗରେ ବିଭକ୍ତ । ସଂସ୍କୃତ ନୃସିଂହ ପୁରାଣରୁ ଏହା ସମ୍ପୂର୍ଣ୍ଣ ପୃଥକ୍ । ନାନା ପୁରାଣ ବିଶେଷତଃ ସାରଳା ମହାଭାରତ, ବଳରାମଙ୍କ ରାମାୟଣ ଓ ଜଗନ୍ନାଥଙ୍କ ଭାଗବତ ପ୍ରଭୃତିରୁ ଉପାଖ୍ୟାନମାନ ଗ୍ରହଣ କରି ସେ ଏହି ପୁରାଣ ଲେଖି ଅଛନ୍ତି । ସେ ଜନମିଶ୍ରା ଭକ୍ତିର ଉପାସକ । ସେ ୮୪ ବର୍ଷରୁ ଅଧିକ ବଞ୍ଚିବା ତାଙ୍କ ଗ୍ରନ୍ଥରୁ ଜଣାଯାଏ ।

**ଟୀକା :**— ଅହଙ୍କ୍ରା— ଶତ୍ରୁତା । ଅରୁଣ— ରକ୍ତ । ଉଲ୍କାପାତ—ବ୍ୟଗ୍ର, ଅସ୍ଥିର । ରାଇ—ଡାକି । ଦେହା—ଦେହ । ଦଶ ଦିଗପାଳ—ଇନ୍ଦ୍ର ପୂର୍ବ ଦିଗର, ଯମ ଦକ୍ଷିଣର, କୁବେର ଉତ୍ତରର, ବରୁଣ ପଶ୍ଚିମର, ମରୁତ ବାୟୁ କୋଣର, ଈଶାନ ବା ଶିବ ଐଶାନ୍ୟ କୋଣର, ଅଗ୍ନି ଅଗ୍ନି କୋଣର, ନୈଋତ ନୈଋତ କୋଣର, ବ୍ରହ୍ମା ଊର୍ଦ୍ଧ୍ୱ ଦିଗର, ଅନନ୍ତ ଅଧୋଦିଗର । ଉତ୍ତର ପୂର୍ବ ଈଶାନ,

ପୂର୍ବ ଦକ୍ଷିଣ ଅଗ୍ନି, ଦକ୍ଷିଣ ପଶ୍ଚିମ ନୈଋତ, ଉତ୍ତର ପଶ୍ଚିମ ବାୟୁ । ମାତ—ମତ୍ତ ହୋଇ, ମତ ପାଠରେ—ମନରେ ନ ଘେନୁଛୁ । ପ୍ରତି ପ୍ରତି—ଗୋଟି ଗୋଟି । ତରଜା—ତର୍ଜନ, ଭର୍ତ୍ସନା । ବାଳ୍ପତ ଲୋକପ୍ରାପ୍ୟ—ପିଲ୍ ପର, ବାତୁଳ ପାଠାନ୍ତର । ନରସ—ଉଣା, ଦୁର୍ବଳ । ଭାଜ୍—ଭାଙ୍ଗ । ଅମ୍ବାସ୍ୱମ—ଭଗବାନ୍ । ବଥାଲ—ଧ୍ୱଂଷଣ । ଆଦକନ୍ଦ—ଆଦମୂଳ । ହାଟକ—ସୁନା । ଅଗୋଚର—ଅତି ବୃହତ, ଅସାମାନ୍ୟ । କରରୁହ—ନଖ । ବକ୍ରମ—ପରାକ୍ରମୀ । ଉତ୍ସନଶାୟୀ—ଚିତ୍ ହୋଇ । ସମସ୍ୟା—ଉତ୍ତର

---

## ରାମାୟଣ—କେଶବ ହରିଚନ୍ଦନ

କେଶବ ହରିଚନ୍ଦନ ଅଷ୍ଟାଦଶ ଶତାବ୍ଦୀର କବି । ଏହାଙ୍କ ଗୃହ ପୁରୀ ଜିଲ୍ଲା ଅନ୍ତର୍ଗତ ଖୋରଧା ଜିଲ୍ଲାରେ ବୋଲି କଥିତ । ସେ ଅତି ସରଳ ଭାଷାରେ ଛନ୍ଦବଦ୍ଧରେ ରାମଚରିତ ଲେଖିଅଛନ୍ତି । ଏହା ସେ ଅଞ୍ଚଳରେ ଅତୀବ ଲୋକପ୍ରିୟ ।

**ଟୀକା :**—ଈଶ୍ୱର—ପ୍ରବୋଧ୍ୟ । ସଧ—ଶୁଦ୍ଧ । ଚିନ୍ତାମଣି—ଚିନ୍ତ ପ୍ରଦମଣି—କାମନାପରିପୂରଣକାରୀ ରତ୍ନବିଶେଷ । କୋହ—କପଟ । ରଖି......କୁମର—ନରକରୁ ରକ୍ଷା କରିବେ ।

ଯେତେ ରାମାୟଣ କଲେ । କେତେ ହୋଇ ଯୁଗ ଗଲାଣି—ପ୍ରତ୍ୟେକ ଯୁଗରେ ରାମଚରିତ ବର୍ଣ୍ଣନାରେ ରାମ ବନକୁ ସୀତାଙ୍କୁ ସଙ୍ଗରେ ନେଇ ଅଛନ୍ତି ଏହା ଋଷିମାନେ ବର୍ଣ୍ଣନା କରି ଅଛନ୍ତି । ହଂସୂଲ୍—ହଂସର ସ୍ତ୍ରୀ ହଂସୁଲୀ, ତାର ଲୋମରେ ନିର୍ମିତ ଅତି କୋମଳ ଶଯ୍ୟା—Downy bed । ଲୋଭ ମୁହାଁସ—ଲୋଭ ଓ ବିଷୟାସକ୍ତି ( ମୋହପାଶରୁ ମୁହାଁସ ) ବା ଲୋଭ ମୋହ । ଶାନ୍ତ—ଥିର । ଅସର—ସର୍ବ ନାହିଁ । ବାସର—ଦିନ । 'ଅସର ବାସର ଯାମିନୀ କାନ୍ତ ପାଶେ ନାହିଁ କାମିନୀ'—ଉପେନ୍ଦ୍ର ଭଞ୍ଜ । ନିସତେ... କୁଟିଳତାରେ । ଜଳଜନେତ୍ର—ପଦ୍ମଆଖି । ଲଉଲ—ନବଜାତ (ଲକ୍ଷ୍ମୀ, ଲଉଲ ବା ଲୌଲ୍ୟ ଶବ୍ଦଜ) କୋମଳ—( Tender aged ) । ଗୁମାନ—

ଅଭିମାନ, ଅହଙ୍କାର । ଅଣିଲି ନାହିଁ କି ଏବେ—ଅନୁନୟ କରି ଏତେ କହିଲେ ସୁଦ୍ଧା ତେବେହେଁ ତମ ମନକୁ ମାନିଲି ନାହିଁ । ଏଠାରେ ତ ମୁଁ ତମ କତିରେ ଥିଲି—ବଣକୁ ଯିବ—ସେ ବନବାସ ଜୀବନରେ କାହାକୁ ସାଥି କରିବ । ଯାହାର......ତୁମ୍ଭେ—ତୁମ୍ଭେ କାହାର କଥା ରଖ ନାହିଁ । ଲବେ—ଟିକିଏ । ଗଣ୍ଡାଳ—ପ୍ରତିରୋଧ, ବାଧା, ନିଷେଧ ।

---

## ରାମକୃଷ୍ଣ କେଳିକଲ୍ଲୋଳ—ତ୍ରିପୁରାରି ଦାସ

ତ୍ରିପୁରାରି ଦାସ ବଣ୍ଟରେ କରଣ ଥିଲେ । ସେ ଏହି କାବ୍ୟରେ ରାମକୃଷ୍ଣ ଉଭୟଙ୍କ ଚରିତ ନିଜ ବୁଦ୍ଧିମତ୍ତାରେ ସୁନ୍ଦର ଭାବରେ ବର୍ଣ୍ଣନା କରି ଅଛନ୍ତି । ଏ କାବ୍ୟ ୨୮ ଛାନ୍ଦରେ ସମ୍ପୂର୍ଣ୍ଣ । ଏ କବି ଶୁଦ୍ଧାଭକ୍ତି ମାର୍ଗର ଉପାସକ । ସେ ବକ୍ରେଶ୍ୱର ପଣ୍ଡିତଙ୍କୁ ନିଜ ଗୁରୁ ବୋଲି କହି ଅଛନ୍ତି । ରାଧାନାଥଙ୍କ ପୂର୍ବେ ଏହି କବି ସ୍ୱ କାବ୍ୟରେ ସବର୍ଣ ଉପଧା ମିଳାଇ କାବ୍ୟ ଲେଖି ଅଛନ୍ତି । ଏହି କାବ୍ୟ ଭଞ୍ଜୀୟ କାବ୍ୟ ରୀତିରେ ଲିଖିତ । କବି ନିଜର ପାଣ୍ଡିତ୍ୟ ତଥା ଶକ୍ତିମତ୍ତା ବିଷୟ ସ୍ୱକାବ୍ୟରେ ଦର୍ଶାଇ ଅଛନ୍ତି । "ରାମକୃଷ୍ଣ କେଳିକୋଲ୍ଲାଳ ଏ କାବ୍ୟ । ଶ୍ରାବ୍ୟ ଅଦ୍ୟାପି ଦ୍ରବ୍ୟ ସୁଭାବ୍ୟ ଭାବ୍ୟ "ପୁନଶ୍ଚ "ରଚିତଲେ କବିଛଳେ ତ୍ରିପୁରାରି ଚମତ୍କାର ଚେଷ୍ଟା ଥୋଇଛି" କବି ମଧ କହି ଅଛନ୍ତି ସେ ଏ କାବ୍ୟରେ ଭକ୍ତି ବିଷୟ ସୁନ୍ଦର ଭାବରେ ବିଳସିତ—ଯଥା—ନିୟମିତ ଗୀତକୁ ମୁଁ ଢଛି କଛି କହିଛି । ବୁଝିଲେ ଉକତି ପନ୍ଥା ଏଥେ ସୁରି ରହିଛି ।

ଟୀକା:—ଦୁରିତପଟଳ—ପାପସମୂହ । କଲ୍ୟାଣ—ମାଙ୍ଗଳିକ କ୍ରିୟା-କଳାପ, ଉତ୍ସବାଦି । ପ୍ରସନ୍ନରେ—ପ୍ରସନ୍ନତାରେ, ମନ ଖୁସିରେ । ଉହ୍ମା—ବଗୁର । ଆବେଶ—ଆସକ୍ତ, ତନ୍ମୟତା । ଆଶରେ—ଧନଜନ ଗୋପଲକ୍ଷ୍ମୀ ପ୍ରାପ୍ତି ବାଞ୍ଛାରେ । ଶଙ୍କର ବାସରେ—ଶିବ ମନ୍ଦିରରେ । ସୁରଭିଦୁହାଁ—ଗାଈ ଦୁହାଁ, ଶିବ ମୁଣ୍ଡରେ କ୍ଷୀର ଢାଳିବା । ପ୍ରମତ୍ତେ ଭୁଟିଲେ - ପାଗଲମାନେ କମିଗଲେ, ପାଗଳ୍ମୀ ଲୋପ ପାଇଲେ, ଧନ ପ୍ରାପ୍ତି ଲୋଭରେ ପାଗଲମି ଛଡ଼ଗଲା । ଫୁଟିଲେ—କ୍ଳାନ୍ତ ହେଲେ । ମଣ୍ଡିଲେ ମନ୍ଦର ଧାଡ଼ି—ମନ୍ଦିର ସବୁ

ଥାଉଲେ । ରଖିଲେ ବାନ୍ଧ—ସ୍ୱର୍ଗକୁ ଶିଡ଼ୀ ବାନ୍ଧିଲେ, ପୁଣ୍ୟ ଅର୍ଜନ କଲେ । ଘଟନ—ଶୋଭା । ଗୁମ୍ଫାସାର ଝୁମ୍ପା ଫୁଲ—ଗୁନ୍ଥା ହୋଇଥିବା ଫୁଲମାଳ ଯହିଁରେ ଫୁଲଖୋପା ଝୁଲୁଥାଏ । ସୁଜ୍ଞା—ଦେବୀ । ଚନ୍ଦନଚର୍ଚ୍ଚା—ଚନ୍ଦନ ଛଟାରେ । ଓଟିବ—ଅଣ୍ଟିବ । ବାଣୀମନୋବୃତ୍ତି—ସରସ୍ୱତୀଙ୍କ ମନର ଭାବ । ଅବରୋଧ—ଅନ୍ତଃପୁର । ଏ ଯୁଗେ—ଏ କାଳେ । ଏ ଦୁହେଁ - ରାମ ଓ କୃଷ୍ଣ । ଲଳିତ ତମାଳ-କଳିତ-କାନ୍ତିକ—ସୁନ୍ଦର ତମାଳ ଗଛର ଶୋଭାକୁ । ଝଳ—ଝଟକ । ବୋହିତ ଏ ଅର୍ଣ୍ଣବେ—ମହାସମୁଦ୍ରରୂପ ଏ ସଂସାରକୁ ପାର କରିବାରେ ଏ ଅଧର ବା ଏ ମୂର୍ତ୍ତି ବୋଇତ । ବଧିର......ସୁଖେ (ଶୁଖେ)—ଏ ମୁଖ ଦ୍ୱାରା ଦୁଃଖିତ ବଧୂର ମନକୁ ସୁଖରେ ବୁଡ଼ାନ୍ତି । ମୁଖର ତୀକ୍ଷ୍ଣ ନେତ୍ର ପ୍ରାନ୍ତପାତର ଶୋଭା ଦର୍ଶନରେ କାମର ମାଂସ ଶୁଖିଯିବ ଅର୍ଥାତ୍ ସେ ଶୋଭା ଦର୍ଶନରେ କାମ ସୌନ୍ଦର୍ଯ୍ୟରେ ପରାସ୍ତ ହୋଇ ଦୁଃଖରେ କୃଶ ହେବ । ଗଣ୍ଡପ୍ରଭଙ୍ଗ—କପୋଳ ଶୋଭା ।

---

## ମନବୋଧ ଚଉତିଶା—ଭକ୍ତଚରଣ ଦାସ ।

ଭକ୍ତକବି ଭକ୍ତଚରଣଙ୍କ ବାସସ୍ଥାନ ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ସୁନାଖଳା ଗ୍ରାମ । ତାଙ୍କ ପ୍ରକୃତ ନାମ ବୈରାଗୀଚରଣ ପଟ୍ଟନାୟକ । ସେ ପ୍ରାୟ ୧୭୩୦ ଖ୍ରୀଷ୍ଟାବ୍ଦରେ ଜାତ ହୋଇ ୧୮୦୫ ଖ୍ରୀଷ୍ଟାବ୍ଦରେ ବୈକୁଣ୍ଠପ୍ରାପ୍ତ ହୋଇ ଥିଲେ । ସେ ଜଣେ ପରମ ବୈଷ୍ଣବ ଥିଲେ । ସେ ମଥୁରାମଙ୍ଗଳ, ମନବୋଧଚଉତିଶା, କଳାକଳେବର ଚଉତିଶା, ମନଶିକ୍ଷା ଓ କେତେକ ଭଜନ ପ୍ରଭୃତି ଲେଖି ଅମର ହୋଇ ଅଛନ୍ତି । ସେ ତାଙ୍କର ସରଳ ଉଦାର ଓ ପବିତ୍ର ମନୋଭାବକୁ ନିଜର ସରଳ ସହଜ ମଧୁର ଭାଷାରେ ପ୍ରକାଶ କରି ଉତ୍କଳରେ ସର୍ବସ ଲୋକପ୍ରିୟ ହୋଇ ଅଛନ୍ତି । ତାଙ୍କ ମନବୋଧ ଚଉତିଶା ଶଙ୍କରାଚାର୍ଯ୍ୟକୃତ ମୋହମୁଦ୍‌ଗର ଆଦର୍ଶରେ ଲିଖିତ ।

ଟୀକା:—ଖଳ—ମଳ, ମନ୍ଦ । ଦେହ୍ମ—ଦେହ (ଦେହ ମଧ୍ୟ) । ଗଣ୍ଠି—ପୋଟଳ, ବୁଜୁଳା । କଳାଉଥିବେ—ମନ୍ତ୍ରମନ୍ତ୍ର ମନ୍ତ୍ରୌଷଧି ଦ୍ୱାରା ନିଜ ଦେହକୁ ଭୂତ ପ୍ରେତାଦିଙ୍କ ଠାରୁ ରକ୍ଷା କରୁଥିବେ । ଚଉରାଶିକ—ଶରୀର

ନରକ ତଥା ବ୍ୟାଘ୍ର ଖଣ୍ଡ—ଚୌରାଶି ବ୍ୟାଘ୍ର ରୂପ ନରକ, ବା ଶରୀର ଚୌରାଶି ଗାଠି ବା ପ୍ରଧାନ ପିଣ୍ଡରେ ନିର୍ମିତ । ଛ ଖଣ୍ଡି କାଠ—ଛ ଖଣ୍ଡ ବାଉଁଶ ମଧ୍ୟ କହନ୍ତି—ମୃତ ଶବକୁ ଶ୍ମଶାନକୁ ନେବା ନିମନ୍ତେ ଲୋକେ ଯେତେବେଳେ ୬ ଖଣ୍ଡ ବାଉଁଶ ବା କାଠ ଲାଗେ । ଗନ୍ଥା—କନ୍ଥା, ଛିଣ୍ଡା ବା ପୁରୁଣା କନା ବା ଲୁଗାରେ ସିଆଁ ହେବା ଗୋଦଡ଼ ବା ବିଛଣା । ଜାତ ସଂସାରେ—ବଣରୂପ ପୃଥିବୀରେ । ଚୈଗ—ପରଦା । ଅପୂର୍ବ ନାରୀ—ଅଦେଖା ସ୍ତ୍ରୀ । ଝୋପ ଚଉରୀ—ଏ ଦେହ ଭିତରେ ଅତି ନିଗୁଢ଼ ପବିତ୍ର ପୀଠ ଅଛି । ସେଠାରେ ପରମପୁରୁଷ ବିଜେ କରି ଅଛନ୍ତି । ପରଦା ଭିତରର ନାରୀ ଭଳି ତାଙ୍କୁ ଜଣା ନାହିଁ । ଶୂନ୍ୟ ଦେବତା ଅରୂପ ବ୍ରହ୍ମ । ଠିକମୁଣ୍ଡ—ମୂର୍ଦ୍ଧା । ଭଞ୍ଚ (ଓଛମଧ—ଜ୍ଞସ୍ୱଶଙ୍କର)—ନଷ୍ଟ, ଗ୍ଲାନି ବା ତୁଚ୍ଛ । ଧୋକା—ସନ୍ଦେହ । ଧନ୍ଦା—ବିଷୟ୍ବାଦର ଅବୋଧତା, "ଯଥାଜାତ ଧନ୍ଦା ଏ ଟି ବୁଧମନବୋଧ—ବି-ଶ" । ଫୁଲ...ବାରେ—ଭଗବାନ ସମସ୍ତଙ୍କ ଅନ୍ତରରେ ଅଛନ୍ତି । ଫୁଲ ଯେପରି କି ଫୁଲର ଧର୍ମ ଯଥା ଗନ୍ଧ ପ୍ରତ୍ୟେକ ଫୁଲରେ ଥାଏ ଓ ଫୁଲ ସମୀରେ—ପବନରେ ଫୁଲ କି ଫୁଲର ଧର୍ମ—ଗନ୍ଧ ଥାଏ କିନ୍ତୁ ପବନକୁ ତା ଦେଖା ହୁଏ ନାହିଁ ସେହିପରି ଭଗବାନ ସର୍ବତ୍ର ବିଦ୍ୟମାନ, ତାହାକୁ ଦେଖା ଯାଉ ନାହିଁ । ଫୁଲର ଫଳସ୍ୱରୂପ—ହରି ସର୍ବତ୍ର ବିଦ୍ୟମାନ ଏହି ଭାବପୋଷଣ ହେଲା ଫୁଲ; ସେହିଭାବ ଧାରଣା ପରେ ହରି ଭଜିବାହିଁ ଫଳ ସଦୃଶ । ଏତ କି ଅର୍ଥ—ଜଗନ୍ନାଥଙ୍କ ମହିମାକୁ ଦୂର କରି, ନ ମାନି । କି ଅର୍ଥ—କି ଠେକ ବହିଛୁ; ବା ମହିମା ଏତେକି ଅର୍ଥ—ଏତେ ଠେକ, ପ୍ରଥମ ଅର୍ଥଟି ଭଲ । ରୂପପ୍ରତିମା—ଦେହବନ୍ତ ପଦାର୍ଥରେ ଆସ୍ଥା ରଖ ନା, ଇତ୍ୟାଦି ।

---

## ବିଦଗ୍ଧଚିନ୍ତାମଣି ( ଯୁଗଳ ଅନୁରାଗ କଥନ )

## ଅଭିମନ୍ୟୁ ସାମନ୍ତସିଂହାର

ଅଭିମନ୍ୟୁ ଯାଜପୁର ଅଞ୍ଚଳର ବାଲିଆ ଗ୍ରାମରେ କ୍ଷତ୍ରିୟ କୁଳରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଗୁରୁ ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା । ସେ ୧୭୫୭

ଖ୍ରୀ ୀ ଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୮୬୭ ଖ୍ରୀଷ୍ଟାବ୍ଦରେ ବୈକୁଣ୍ଠଧାମ ଯାଇଥିଲେ । ସେ ଉପେନ୍ଦ୍ରଭଞ୍ଜ ଓ ସଦାନନ୍ଦ କବିସୂର୍ଯ୍ୟଙ୍କଠାରୁ ମାଲ ମସଲା ନେଇ ଏପରି ଦକ୍ଷତା, ଔଚିତ୍ୟ ଓ ସଙ୍ଗତ ସହ କାବ୍ୟସୌଧରାଜି ନିର୍ମାଣ କରିଛନ୍ତି ଯେ ତାହା କାବ୍ୟକୁଶଳୀ ତଥା କଳାଭିଜ୍ଞଙ୍କର ବିସ୍ମୟ ଉତ୍ପାଦନ କରେ । ଯେତେବେଳେ ସେ ସରଳ ପ୍ରାଣରେ ଭକ୍ତଙ୍କ ହୃଦୟରେ ଗାନ କରି ଅଛନ୍ତି ସେତେବେଳେ ସେ ଦିବ୍ୟ କୋକିଳବତ୍ ସୁଧାଧାରା ବର୍ଷଣ କରି ଅଛନ୍ତି ଏବଂ ଯେତେବେଳେ ପାଣ୍ଡିତ୍ୟପରାକ୍ଷରା ରକ୍ଷା ନିମନ୍ତେ ପ୍ରୟାସ କରି ଅଛନ୍ତି ସେତେବେଳେ ସେ ଭଞ୍ଜୀୟ ଶବ୍ଦାଳଙ୍କାରଗର୍ଭ ଛନ୍ଦକାବ୍ୟାଦିର ପ୍ରଦର୍ଶନୀ ଖୋଲି ଦେଇ ଅଛନ୍ତି । ତାଙ୍କ କାବ୍ୟମାନଙ୍କ ମଧ୍ୟରେ ବିଦଗ୍ଧଚିନ୍ତାମଣି, ରସବତୀ ଓ ସୁଲକ୍ଷଣା ପ୍ରଧାନ ।

**ଟୀକା :**—ଚଞ୍ଚରି—ଚଞ୍ଚଳ, ଯେ ରତ୍ନ ପରୀକ୍ଷା କରେ । ଦୀନେ—ଦୁଃଖିତାବସ୍ଥାରେ । ଛନ୍ନେ—ଆତୁରତାରେ, ବ୍ୟଗ୍ରତାରେ । କମଳ—ପଦ୍ମ ଓ ଜଳ । ଅପଘନ—ଦେହ । ଶାମସୁବାସରେ—କୃଷ୍ଣବର୍ଣ୍ଣର ଉତ୍ତମ ବସ୍ତ୍ରରେ । ନୀଳବତୀ—ନୀଳଶାଢ଼ୀ, ( ବା ରାଜି ? ) ବା କଳାନିପୁଣା ସ୍ତ୍ରୀ । ନୀଳେନ୍ଦ୍ରମଣିବର—ଉତ୍କୃଷ୍ଟ ଇନ୍ଦ୍ରନୀଳମଣି । କବରୀ—ଜୁଡ଼ା, ଭ୍ରମବଶରେ କୃଷ୍ଣଙ୍କ ବର୍ଣ୍ଣ ସାମଞ୍ଜସ୍ୟ ହେତୁ—ନିଜର ଚିକୁର ଶାଙ୍ଖ ନମିଛି । ହେମ ମରକତ ଯୋଖି—ରାଧାଙ୍କ ବର୍ଣ୍ଣ ହେମ, କୃଷ୍ଣଙ୍କ ବର୍ଣ୍ଣ ମରକତକୁ ଯୋଗ କରି ନିଜକୁ କୃଷ୍ଣଙ୍କ ସଙ୍ଗେ ରଗିଲି ଭଳି କରି । ଅଶକତ—ଶକ୍ତିହୀନ । ରଙ୍ଗକମଳରେ—ନୀଳୋତ୍ପଳ । ସୁମନା—ମାଳତୀ ଫୁଲ । ଗଭା—ଫୁଲତୋଡ଼ା । ପଦ୍ମନ—ପଦ୍ମାବଳୀ । କେତକୀ—ନିଜବର୍ଣ୍ଣର ସାମ୍ୟହେତୁ—ତିରସ୍କାର କରୁଛି କେତକୀକୁ ମୁଁ ଭ୍ରମରବର ରସୁନାହିଁ—ଭ୍ରମର ଏ ..ରେ କୃଷ୍ଣଙ୍କର ସାମ୍ୟ ହେତୁ କହୁଛି । ଗୁଞ୍ଜଫଳ—କାଇଁଚ ଫଳକୁ ଦେଖି ପ୍ରଶଂସା ଓ ଗୁଞ୍ଜରି ପାଟିକି—( ଗୁଞ୍ଜର ପୋକର ଖୋଳର ମାଳ ) ନିନ୍ଦା କଲି, କାରଣ କାଇଁଚରେ ନାଲି ଓ କଳା ରଙ୍ଗ ଥିବାରୁ ତନ୍ମଧ୍ୟରେ ଅନୁରାଗ ଅଛି, ଗଞ୍ଜରିପାଟି, କେବଳ କଳା ଥିବାରୁ, ଯୁଗଳ ବର୍ଣ୍ଣ ନ ଥିବାରୁ ତାକୁ ଗାଳି ଦିଆଗଲା । ଦୋଷଇ—ଦୋଷାରୋପ କରଇ । ଲୁଛି—ଦୁଃଖରେ ଅଭିଭୂତ ହେବା ବା ଲଜ୍ଜିତ ହେବା ।

ଗୁଣଗ୍ରାହୀ—ଗୁଣଗ୍ରାହିଣୀ ଅର୍ଥରେ । ଯୋଗ୍ୟାଇବ—ଉପଯୁକ୍ତ ପାତ୍ର ହେବ, ସତ୍ରହେବ ।

—✽—

## ଗୋପାଳକୃଷ୍ଣ ପଦ୍ୟାବଳୀ

ଗୋପାଳକୃଷ୍ଣ ପାରଳା କିଲ୍ଲାର ଲୋକ । ସେ ୧୭୮୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୮୬୭ ଖ୍ରୀଷ୍ଟାବ୍ଦରେ ବୈକୁଣ୍ଠପ୍ରାପ୍ତ ହୋଇଥିଲେ । ରାଧାକୃଷ୍ଣ ପ୍ରୀତି ବିଷୟରେ ତାଙ୍କ ଗୀତମାନ ଲିଖିତ । ସେ ଶୁଦ୍ଧାଭକ୍ତି-ମାର୍ଗର ଉପାସକ । ତାଙ୍କ ଭାଷା ଶୁଦ୍ଧ, ମଧୁର ଓ ବନମାଳୀଙ୍କ ଠାରୁ କିଞ୍ଚିତ୍ ସଂସ୍କୃତ-ପ୍ରାୟ । ତାଙ୍କ ଗୀତିମାଧୁରୀରେ ଲୋକ ମୁଗ୍ଧ ଓ ଆନନ୍ଦ ରସରେ ଅପ୍ଲୁତ ହୁଏ ।

**ଟୀକା :** କରମାଳକର—ସୂର୍ଯ୍ୟକିରଣ । ଲୁଛିଯିବ—କଷ୍ଟରେ ଅନ୍ତଭୂତ ହେବ । ପୋଟାଳି—ପୁଡ଼ିଆ, ଆଦରର ବସ୍ତୁ । ବରଜରାଜ ପୁଣ୍ୟପୁଞ୍ଜ—ବ୍ରଜରାଜ ଯେ ନନ୍ଦ ତାଙ୍କ ପୁଣ୍ୟସମୂହର ଫଳସ୍ୱରୂପ । ନ ଅରଜ—ଗୋଚାରଣ ବୃତ୍ତି କରି ଧନ ଅର୍ଜନ କରି ନାହିଁ । ଧରଣୀ ଧରୁନାହିଁ—ସଂସାର ବୁଝୁ ନାହିଁ । ପୌର୍ଣ୍ଣମାସି—(ପୂର୍ଣ୍ଣମାସୀ ମଧ୍ୟ ଓଡ଼ିଆରେ କହନ୍ତି) ଏ ଯୋଗମାୟାଙ୍କ ଅବତାର । କୃଷ୍ଣଙ୍କର ଗୁରୁ ସାନ୍ଦୀପନି ଋଷିଙ୍କ ମାତା । ସୁରତଦେବୀଙ୍କ ଔରସରେ ଚନ୍ଦ୍ରକଳାଙ୍କ ଗର୍ଭରେ ପୌର୍ଣ୍ଣମାସୀ ଓ ଦେବପ୍ରସ୍ଥଙ୍କ ଜନ୍ମ । ପୌର୍ଣ୍ଣମାସୀଙ୍କ ପତିଙ୍କ ନାମ ପ୍ରବଳ । ପୌର୍ଣ୍ଣମାସୀ ମହାବିଦ୍ୟାରେ ଲଳିତା ଓ ରାଧାକୃଷ୍ଣଙ୍କ ମିଳନକାରିଣୀ ।

—✽—

## ରହସ୍ୟାବଳୀ—ଯଦୁମଣି

ସେ ଗଞ୍ଜାମ ଜିଲ୍ଲାସ୍ଥ ଆଠଗଡ଼ କିଲ୍ଲାର ବ୍ୟକ୍ତି । ସେ ଜାତିରେ ବଢ଼ାଇ ଥିଲେ । ସେ ୧୭୮୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୮୪୫ ଖ୍ରୀଷ୍ଟାବ୍ଦରେ ପରଲୋକପ୍ରାପ୍ତ ହୋଇଥିଲେ । ସେ ବହୁକାଳ ନୟାଗଡ଼ରେ ଅତିବାହିତ କରିଥିଲେ । ସେ ଜଣେ ପ୍ରତିଭାବାନ୍ କବି । ତାଙ୍କ ଲେଖା ବହୁଳ ପରିମାଣରେ

ଉପେନ୍ଦ୍ର ଭଞ୍ଜଙ୍କ ଲେଖାଦ୍ୱାରା ପ୍ରଭାବିତ । ସେ ତାଙ୍କ ହାସ୍ୟୋକ୍ତି ନିମିତ୍ତ ଓ ଅଶ୍ଳୀଳକବିତା ନିମିତ୍ତ ସର୍ବତ୍ର ପ୍ରସିଦ୍ଧ । ସେ ପ୍ରବୋଧ ପୂର୍ଣ୍ଣଚନ୍ଦ୍ର—(ଭୁମ୍ପୀ ଶୀବିଳାସ) ଓ ରଘୁନାଥ ବିଳାସ ପ୍ରଭୃତି ଲେଖି ଅଛନ୍ତି । ତାଙ୍କ ହାସ୍ୟୋକ୍ତିମାନ ଯଦୁମଣି ରହସ୍ୟ ନାମରେ ସଙ୍କଳିତ ହୋଇଅଛି ।

ଟୀକା :—ହୟଗ୍ରୀବ—ବିଷ୍ଣୁଙ୍କ ଅବତାରବିଶେଷ; ବ୍ରହ୍ମାଙ୍କ ଯଜ୍ଞାଗ୍ନିରୁ ଜାତ ହୋଇଥିଲେ । ହୟଗ୍ରୀବଙ୍କ ନାସାପୁଟରୁ ବେଦବାଣୀ ନିଃସୃତ ହୋଇଥିଲା । ମଧୁକୈଟଭଙ୍କ ଦ୍ୱାରା ବେଦ ଅପହୃତ ହୁଅନ୍ତେ ହୟଗ୍ରୀବ ତାଙ୍କୁ ମାରି ବେଦ ଉଦ୍ଧାର କରିଥିଲେ । ମଧୁକୈଟଭ ମହାପରାକ୍ରାନ୍ତ ତାଙ୍କୁ ମାରିବା ହେତୁ ହୟଗ୍ରୀବ ମହାପ୍ରତାପୀ । କବି ହୟଗ୍ରୀବ ଉପାସକଥିବା ଅନୁମେୟ—ତାଙ୍କ କୃପାରୁ ସେ ରାଜାମାନଙ୍କର ଆଦରର ପାତ୍ର ହୋଇଥିଲେ । ରାଜାମାନେ ଭଲଙ୍କଠାରେ ଭଲ ଓ ଖଣ୍ଡଙ୍କ ସଙ୍ଗରେ ଖଣ୍ଡର ବ୍ୟବହାର କରନ୍ତି ( ଯଦୁମଣିଙ୍କୁ ଭଲରେ ଭଲ ଓ ମନ୍ଦରେ ମନ୍ଦ ଅର୍ଥ କରିବା ଠିକ ନୁହେଁ ) ।

ନବଦୁର୍ବାଦଳ ଶ୍ୟାମଳ—ଶ୍ରୀକୃଷ୍ଣଙ୍କ କୃପାରେ ନାମ ହୋଇ ଉଜ୍ଜ୍ୱଳ ଘଣ୍ଟା । ଘଣ୍ଟାକୁ ପ୍ରହାର କଲେ ତାହା ଯେପରି ଶବ୍ଦ କରେ ସେହିପରି ଯଦୁମଣି ପ୍ରଶ୍ନ କରିବା ମାତ୍ରେ ଉତ୍ତର ଦେଉଥିଲେ—ଅର୍ଥାତ୍ ସେ ପ୍ରଗଲ୍‌ଭବାକ୍ ତଥା ପ୍ରଧାନ ବକ୍ତା ଥିଲେ ।

କୁଞ୍ଜବନକୁ ନ ଯିବାରୁ କବି ଜଗନ୍ନାଥଙ୍କୁ କହୁ ଅଛନ୍ତି । ଲୋକଙ୍କର ପ୍ରକୃତରେ ଭକ୍ତି ନାହିଁ—ଖାଲି ବିଧି ରକ୍ଷା କଲା ପରି ପୂଜା କରୁଛନ୍ତି ।

ବିଷ—ଗରୁଡ଼ ସର୍ପଭକ୍ଷକ—ବିଷ ନାଶକାରୀ—ପୁନଶ୍ଚ ଗରୁଡ଼ଗୋବିନ୍ଦ ବୃକ୍ଷ ମଧ୍ୟ ବିଷହାରକ । ଅଧକରି—ଅପନୀ ଅଳଅ। ମଳଅ।—ଗୋବରରେ ଲେପିଲେ ସ୍ଥାନ ପରିଷ୍କୃତ ହୁଏ ।ତାଜନିତ ସମସ୍ତ ଦୋଷ ନାଶ କରେ ଗୋବର ।

ଧନଅ। ସେବନ କଲେ ବାତ ଦୋଷ ନଷ୍ଟ ହୁଏ ।

ଆଜ୍ଞା—ଗୋବର ଧନଅ—ଇନ୍ଦ୍ରଧ୍ୱଜ ପୂଜା କରିବାରେ ଯେ ଶାସ୍ତ୍ରାଜ୍ଞା ତାହା ଅବଜ୍ଞା କରି ଥିଲେ ଗଉଡ଼ ଗୋବର୍ଦ୍ଧନଅ—ଗୋପାଳ ବାଳକ ଶ୍ରୀକୃଷ୍ଣ । ପୁନଶ୍ଚ ଜନଶ୍ରୁତିରୁ ଜଣାଯାଏ ଗୋବରଧନ ନାମକ ଜଣେ ଗଉଡ଼ ଯଦୁମଣିଙ୍କ

ରାଜଦଣ୍ଡ ଦମ୍ଭ ଭାଗଗ୍ରହଣ କରୁଥିଲା । ସେ ଫଳରୁ ଯଦୁମଣିଙ୍କୁ ନ ଦେବାରୁ—ରାଜାଙ୍କ ଅଙ୍ଗ ପ୍ରବେଶ କରିବାରୁ—ଯଦୁମଣି ଏହା ଲେଖି ରାଜାଙ୍କ ନିକଟକୁ ପଠାଇଥିଲେ ।

ଦର୍ପଣରେ ଅନ୍ଧର ଲୋଡ଼ା ନାହିଁ । ଗୋଦାନ ଗ୍ରହଣ କରିବାରେ ସମର୍ଥ ଶ୍ରୋତ୍ରିୟ ବ୍ରାହ୍ମଣ ମୂର୍ଖ ଅନାଚାର ଅଧାର୍ମିକକୁ ଗୋରୁ ଦେବା ଅବିବେକତାର କାର୍ଯ୍ୟ । ଭିଜା ତେଲରେ ଖଡ଼ା ରାନ୍ଧିଲେ ସ୍ୱାଦହୀନ ହୁଏ—ଏବଂ ସେପରି ରାନ୍ଧିବା ମଧ୍ୟ ମୂର୍ଖତାର ଚିହ୍ନ । ଘୋଡ଼ାକୁ ଚୁମ୍ବନ ଦେଲେ ସେ କାମୁଡ଼ି ପକାଇବ—ଏହାର ମର୍ମ ଏହି ଯେ ଗୁଣହୀନ ଓ ଅପାତ୍ର ସେ କପରି ଗୁଣ ଓ ମାନର ମର୍ଯ୍ୟାଦା ବୁଝିବ—ତେଣୁ ଏହା ଅକ୍ଷେପୋକ୍ତି ।

ଯଦୁମଣି ଖଣ୍ଡପଡ଼ା ଯାଉଥିଲେ—ରାଜାଙ୍କଠାରୁ ଜଳଖିଆ ଆସିଲା—ସେଥିରେ କାନ୍ତି ନାମର ଘି ଥିଲା—ତାହା ବାସି ଓ ଦେଖିବାକୁ ଅବର୍ଜିଆ—ତେଣୁ ତାକୁ ଯଦୁମଣି ଖାଇଲେ ନାହିଁ—ସେତ ଖଣ୍ଡପଡ଼ା—କନ୍ଦରପୁର—ଅଧାର—ଏହି ନାମ ମୁହଁରେ ଧରିବାରୁ ମୁହଁ ମିଠା ହେଲା—କିନ୍ତୁ ପେଟରେ କିଛି ପଡ଼ିଲା ନାହିଁ—କେବଳ ଖଣ୍ଡ ମୁହଁରେ ବୁହାଗଲା । ଚର୍ବ୍ୟ କରିବା ଲୋକ ଆଉ କିଛି ଖାଇବା କଥା ନ ବୁଝି ସିଧା ସିଧା ଚାଲି ଯିବାରୁ ଯଦୁମଣି ଉପାସରେ ସମସ୍ତ କାଟିଲେ ।

ଛବିରେ—ହୋଇଥିବ—ତାହା ଅବର । ଅବର ଆଉ ଭଲ । ଅବାର—ସେ ବାର ହୁଏନ୍ତି ତାର ଧନୁଶରରେ ପ୍ରୟୋଜନ ନାହିଁ ସେ ବକ ହଏ । ଏବ ଯେ ଛେଳ ତାର ପାଣି ଭୟ । ଅ—ବିଷ୍ଣୁ—ତାଙ୍କର ବ ଯେ ପକ୍ଷୀ ଗରୁଡ଼—ତାର (ଅବର) ଖାଇବେ ତେଣୁ ତାର ସାପଙ୍କୁ ଭୟ ନାହିଁ ।

---

## ସର୍ପ ଚାଣାଣ—ବଳଦେବ କବିସୂର୍ଯ୍ୟ ବ୍ରହ୍ମା

ସେ ଗଞ୍ଜାମ ଅଠଗଡ଼ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ପ୍ରବୀଣ ଶାସ୍ତ୍ରଜ୍ଞ ପଣ୍ଡିତ ଥିଲେ । ଅଧିକନ୍ତୁ ତାଙ୍କର ମଧ୍ୟ ଡ-ସାହିତ୍ୟରେ ପଥ

# କୃତଜ୍ଞତା ସ୍ୱୀକାର

ବି. ଏ.ରେ ଓଡ଼ିଆ ବାଧ୍ୟତାମୂଳକ ଭାବରେ ପଢ଼ା ଯିବାର ସ୍ଥିର ହେବାରୁ ଏହି କବିତାବଳୀ ପ୍ରକାଶିତ ହେଲା । ଏହି ପୁସ୍ତକରେ ପ୍ରାଚୀନ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗର କବିମାନଙ୍କର କବିତା ଆବଶ୍ୟକମତେ ପ୍ରକାଶିତ ହେଲା । ଯେଉଁ କବି, ପୁସ୍ତକ-ପ୍ରକାଶକ ବା କବିଙ୍କ ଉତ୍ତରାଧିକାରୀମାନେ କବିତା ବା କବିତାଂଶ ପ୍ରକାଶ କରିବା ନିମନ୍ତେ ଅନୁମତି ଦେଇ ଅଛନ୍ତି, ଏହି ବିଶ୍ୱ-ବିଦ୍ୟାଳୟର କର୍ତ୍ତୃପକ୍ଷମାନେ ସେମାନଙ୍କ ନିକଟରେ କୃତଜ୍ଞ ।